# ଭୂମିକା ।

---

ବାଣପୁରନିବାସୀ କବି ଲୋକନାଥ ଦାସଙ୍କ ବିରଚିତ ସର୍ବାଙ୍ଗ-ସୁନ୍ଦରୀ ଖଣ୍ଡିଏ ସରସ କାବ୍ୟ ପୁସ୍ତକ । ଏଥିର ରଚନାପ୍ରଣାଳୀ ଅତି ମନୋହାରିଣୀ । ଉପେନ୍ଦ୍ରଭଞ୍ଜ ପ୍ରଭୃତି ପ୍ରଧାନ କବିମାନଙ୍କ କାବ୍ୟ ସଙ୍ଗରେ ତୁଳନା କଲେ ଏହାକୁ କୌଣସି ଅଂଶରେ ନିକୃଷ୍ଟ ବୋଲି ଯାଇ ନ ପାରେ । ଏ କାବ୍ୟ ଖଣ୍ଡି ସର୍ବସାଧାରଣରେ ସେତେ ପ୍ରଚାର ହୋଇ ନ ଥିବାରୁ ଅମ୍ଭେ ସେ ଅଭାବ ମୋଚନାର୍ଥେ ଯଥାସାଧ୍ୟ ଯତ୍ନ ସହକାରେ ସଂଶୋଧନ କରି ମୁଦ୍ରିତ କରାଇଲୁଁ । ସର୍ବସାଧାରଣ ଏହାକୁ ସାଦରେ ଗ୍ରହଣ କଲେ ଆମ୍ଭର ପରିଶ୍ରମ ସଫଳ ଜ୍ଞାନ କରିବୁଁ ।

୧ । ୮ । ୯୧
କଟକ

ଶ୍ରୀ ଗୌରୀଶଙ୍କର ପଟ୍ଟନାୟକ

# ସର୍ବାଙ୍ଗସୁନ୍ଦରୀ ।

---

## ପ୍ରଥମ ଛାନ୍ଦ ।

### ରାଗ ଚକ୍ରକେଳି ।

ଜୟ ଜୟ ଘନସାରସୁନ୍ଦର । ଜୟ ଜୟ ନରକନାଶକର । ୧
ସ୍ମରୁ କରକଳିତ ଚନ୍ଦ୍ରହାସ । ଜୟ କାଳକାକାନ୍ତ ବ୍ୟୋମକେଶ । ୨
ବଧୂ ବଲ୍ଲବସ୍ତ ମିଏ ଜୟୁଜ । ଶଙ୍ଖଭୂଷିତ ହରିତବସନ । ୩ । ମଣ୍ଡଧର
କନକ-ସୂତା-କାନ୍ତ । ବୃଷପତ ଅଶେଷ ଶକ୍ତିମନ୍ତ । ୪ । ରୁଦ୍ର ଭବ
ଉଡୁପ-କଳାଧର । ଶ୍ରୀମ-ହର ନନ୍ଦକ-ହଲ-ଧର । ୫ । ଲୋକ-ଈଶ୍ୱର
ଅନନ୍ତ ଶ୍ରୀଧର । ବନାଯୁକ୍ତବଦନ ଭୂତେଶ୍ୱର । ୬ । ସଦାନନ୍ଦ ଅନାଥ
ବୃନ୍ଦଧର । ଛତ୍ର ସହସ୍ରକର ଧାମାବର । ୭ । କାଳୀପୂଜିତ ଅସ୍ତ-
ବୂନନ୍ଦନ । ଧର୍ମରକ୍ଷ ସନ୍ତାପକନାଶନ । ୮ । ରାମ ଦନରସ-ସୁଦ
ବଦନ । ପରଶୁଧାରକ ହରକେତନ । ୯ । କମଳ ଯଶୋଦର କ୍ରବୁ
କର । ଭଗବାନ ସର୍ବଗୁଣଆକର । ୧୦ । ଅମ୍ବର ଧର ଛଳ
ପାବକ । ସ୍ମିତ ଚଞ୍ଚଳାଅନନ୍ଦଦାୟକ । ୧୧ । ସଦାଶିବ କାମଦ-
ଯୋଗେଶ୍ୱର । ଚନ୍ଦ୍ର-କଳାପ-ଚକ୍ର-ମଣିଧର । ୧୨ । ପୁରୁଷୋତ୍ତମ
କ୍ଷେତ୍ରାସ୍ତ୍ରଗଞ୍ଜନ । ଅଘବନାଶ ତ୍ରିପୁରନିଦାନ । ୧୩ । ଏ ଯେ-
ସପ୍ତୋଦଶ ପଦ ସୁମତ । ସରଙ୍ଗଶ୍ଳେଷ ହରିହର ସ୍ତୁତ । ୧୪ । ମୋର
ମାନସ-ମନ୍ଦ ମନ୍ଦବୁଦ୍ଧି । କର କରୁଣା କରୁଣାଜଳଧି । ୧୫ । ଏବେ-
ସର୍ବାଙ୍ଗସୁନ୍ଦରୀ ଚରିତ । ହେଉ ଅଲପ୍ରେ ପରିସମାପତ । ୧୬ ।
ସାଧୁଜନମାନେ ହୋଇ ହରିତ । ଶୁଣ ସର୍ବାଙ୍ଗସୁନ୍ଦରୀ ଚରିତ । ୧୭ ।

ଯେଣୁ ବନ୍ଧୁ ରଚନାପ୍ରିୟ ଚତୁର । ତେଣୁ ଜାଣିଲେ ଶୁଣିବେ ମୋ ଗୀତ ୧୮
ଖଳେ ନ କହନ୍ତୁ ମୁଁ ଏଣୁ କର । ତାଙ୍କ ସ୍ୱଭାବ ପରଗୁଣ ଚୋର । ୧୯
ସୁଧା ଦେଲେ ନେଇ ସର୍ପ ବଦନ । ଗରଳରୁ ନ କରଇ ଆନ । ୨୦
ଗୋପୀଜନବଲ୍ଲଭ ପରସନେ । ମୋର ଗୀତ ଏମନ୍ତ ଖଳଜନେ ।
କହି ନ ପାରିବେ ହେଲେ ବିମୁଖ । ଯେସନେ ମନ୍ତ୍ର ବନ୍ଧନେ ଅହି
ମୁଖ । ୨୨ । ଏକଦିନେ ଦିନେଶ ଅବସାନେ । ହର ଗଉରୀ କୁସୁମ-
କାନନେ । ୨୩ । ଜଉତୁକଭରେ କରୁଁ ଭ୍ରମଣ । କେତେ ଦୂରେ
ଦେଖିଲେ ମୁନିଗଣ । ୨୪ । ଆତ୍ମା ବ୍ରହ୍ମେ ଲୀନ ବାତ ନରୋଧି । ନାହିଁ
କାହାର ଅଙ୍ଗେ ଦେହ ବୃଦ୍ଧି । ୨୫ । ତପବଳକୁ ଦେଖି ତାହାଙ୍କର ।
ପ୍ରିୟା ବଦନକୁ ଚାହିଁଲେ ହର । ୨୬ । ତୁମ୍ଭେ ଜଗନ୍ମୋହନୀରୂପ ଧର ।
ତପବଳ ଦେଖିବା ଏହାଙ୍କର । ୨୭ । ପତି ଆଜ୍ଞାପ୍ରମାଣେ ଯୋଗେ-
ଶ୍ୱରୀ । ଚାହିଁଲେ ସେ ବାମକୁ ବକ୍ର କରି । ୨୮ । ସ୍ମର ଅବଲୋକ-
ନରୁ ତାଙ୍କର । ଏକ ଯୁବତୀ ହେଲା ଅବତାର । ୨୯ । ତାର ନାମ
ହେଲା ସ୍ମରଅପାଙ୍ଗୀ । ହେଲେ ପାରଇ ହର ଯୋଗ ଭାଙ୍ଗି । ୩୦ ।
ତତକ୍ଷଣେ ତା ହାସରୁ ସଜନୀ । ଜାତ କଲା ମଧୁ ଚନ୍ଦ୍ରଯାମିନୀ । ୩୧
ମନ୍ଦ ମନ୍ଦ ବହେ ଶୀତ ମରୁତ । ପିକ କୂଜିତ କୁଞ୍ଜ କୁସୁମିତ । ୩୨ ।
ସହକାରମଞ୍ଜରୀ ପତବୃତ । ହୋଇ ଝଂକୃତ ସ୍ୱନ ମଧୁବ୍ରତ । ୩୩ ।
ଦେଖି ଏମନ୍ତ ଅଦ୍ଭୁତପଟଳ । ଦୂରତକୁ ଉଠିଲେ ଯୋଗିକୁଳ । ୩୪
ଏକ ଯୋଗୀ ନାମ ଜ୍ଞାନଅଙ୍କୁର । ଯୁବା ସୁକୁମାର ଅତି ସୁନ୍ଦର । ୩୫
ତାର ହୃଦେ ପଡ଼ନ୍ତେ କାମଶର । ଅପଘନ ହୋଇଲା ଜର ଜର ।
ମନବାଟେ ନଭିଲା ଜ୍ଞାନଦୀପ । ଚନ୍ଦ୍ରକରେ ଦୂରକୁ ଗଲା ତପ । ୩୭
ଦ୍ୱିଜପ୍ରିୟ ବଚନ ବକ୍ର ତ୍ରୁଟି । ଗଲା ଧଇର୍ଯ୍ୟଗିରିବର ଭାଜି । ୩୮ ।
ସେ ଯେ ଚାହିଁଦେଲା ଫେଡ ନୟନ । ଅଗେ ଦେଖିଲା ନାଗଶିରତନ ।
ମାର ଗଞ୍ଜୁଥାଇ ଯୋଗିକୁଳ । ତହିଁ ପାଇଲା ବାଳା ସାହା ବଳ । ୪୦

ଏକାନ୍ତରେ ଦେଖନ୍ତେ ତାର ମୁଖ । କାମ ସହସ୍ରଗୁଣେ ଦେଲା ଦୁଃଖ ୪୧
ସଂମୋହନଶର ତନୁରେ ତ ର । ଯାଇ ପଡନ୍ତେ ଯୋଗୀନ୍ଦ୍ର ନେତ୍ରର ।
ଅନ୍ଧାର ଦେଖିଲା ଅନ୍ୟ ସକଳ । ଏକା ଦଶେ ବାଳା ମୁଖମଣ୍ଡଳ ।
ଏହି ସମୟେ ସେ ସୁରଅପାଙ୍ଗୀ । ଅରମ୍ଭିଲା କନ୍ଦୁକରୂପେ ଭଙ୍ଗୀ । ୪୪ ।
ବାନ୍ଧୁ ଦେଇ ରସାଳ ବଟପୀରେ । ଯଉ ସର୍ବାଙ୍ଗ ବକୁଳକୁ କରେ । ୪୫
ରତିରସପ୍ରଧାନ ଶୁକୁ ଗୀତ । କରୁଅଛି ପଞ୍ଚମସ୍ୱରେ ନାଦ । ୪୬ ।
କ୍ୟାଜ ଖେଳାରେ ବାହୁଯୁଗ ତୋଳି । କୁଚମୂଳକୁ ଦେଖାଉଛି ବାଳୀ ।
ଚାଳ ଶୁହିଁଛି ନୟନପ୍ରାନ୍ତରେ । ହାସ ପ୍ରକାଶ କରୁଛି ଅଧରେ ।୪୮
ତାହା ଦେଖି ମଦନେ ଛାଡି ଲକ୍ଷ । ଯୋଗଅଞ୍ଜନ ବେଗେ କଲା
ତେଜ୍ୟା ।୪୯। କର ଯୋଡି କରେ ତାରେ ଦଇନ । କର କର କୃପା
କରିଗମନୀ । ୫୦ । ବୁଡି ଯାଉଛି ମଦନସାଗରେ । ନାହିଁ ଶରଣ
ତୋହର ବାହାରେ । ୫୧ । ଯେବେ ପାଇବ ତୋର ଜାନୁ ଭେଳା ।
ରକ୍ଷା ହୋଇବ ଅରେ ପ୍ରେମଶୀଳା । ୫୨ । ପ୍ରାଣପ୍ରିୟସୀ ଏ ମୋର
ଜୀବନ । କାମବାଣେ ହେଉଛି ମୃତ୍ୟୁବତ । ୫୩ । ରକ୍ଷା ପାଇବ
ପାଇଲେ ଅବଶ୍ୟ । ତୋର ସୁନ୍ଦରଙ୍କ ଅଧରପୀୟୂଷ । ୫୪ । ହାସ-
ଅଉଷଧ ଦର୍ଶ୍ଶି ତୋହର । କାମଜ୍ୱର ହୋଇବ ମୋର ଦୂର । ୫୫ ।
ସଖୀ ସହିରେ କର ପରରମ୍ଭ । ନାଶ ମଦନ ନାଶକର ଦମ୍ଭ । ୫୬ ।
ଯେବେ ନ ରଖିବୁ ନାଗରଚନ୍ଦ୍ର । ନାହିଁ ଶରଣ ଗଲାଟି ଜୀବନ । ୫୭
ଏତେ ବୋଲି ସେ ଯୋଗୀ କାମବଳେ । ବେଗେ ପଡିଲା ବାଳା ପାଦ
ତଳେ । ୫୮ । ଏହି ସମୟେ ଗଉରୀଶଙ୍କର । ଲତା ଅନ୍ତରୁ ହୋ-
ଇଲେ ବାହାର । ୫୯ । ହର ଗଉରୀଙ୍କ ଅବଲୋକନେ । ଜ୍ଞାନ ପ୍ରବେଶ
ଅସି ହେଲା ମନେ । ୬୦ । କାମ ପଳାଇଲା ଦେଖି ଇଶାନ । ଲଜ୍ଜା-
ଜଳଧିରେ ହେଲା ମଗନ । ୬୧ । ପୁଣି ଏମନ୍ତ ଚିତ୍ତରେ ବିଚାର ।
ହର ମୁଖକୁ ଚାହିଁବ କକଉ । ୬୨ । ପୁଣି ବିଚାର କରଇ ମନର ।

ଏତ ଅନ୍ତରଯାମୀ ଯୋଗେଶ୍ୱର । ୬୩ । ମୋର ଦୁଃସହ ଦୁରିତ
ନାଶରେ । କ୍ଷମ ନାହିଁ ଏହା ବନା ସଂସାରେ । ୬୪ । ଏତେ ବଚନ
ସେ ଏକବାକ୍ୟରେ । ସ୍ତୁତି କରେ ଦମ୍ପତିଙ୍କ ସହରେ । ୬୫ । ଜୟ
ଜୟ ଚଣ୍ଡାସୁରନାଶନ । ଜୟ ବୃଷବାହନ ପଞ୍ଚାନନ । ୬୬ । ଜୟ
ଗିରିସୁତାସୁଖଦାୟକ । ଅପାଙ୍ଗରେ ଜଗତ ପୁଷ୍ପଶାୟକ । ୬୭ । ଶଶୀ-
ଶେଖର ଭୁଜଙ୍ଗନାଗହାର । ଶକ୍ତିଧରଜନକ ଶୁଭଙ୍କର । ୬୮ । ଏହି
ସ୍ତୁତି ବଚନ ଶୁଣି ତାର । ଦୟା କଲେ ସେ ଗଉରୀ ଶଙ୍କର । ୬୯ ।
ରତ୍ନମାଳା କଟକ ନରେଶ୍ୱର । ନାମ ସୁରତଶିରୋମଣି ତାର । ୭୦ ।
ତାର ବନିତା ଲବଣ୍ୟଜଳଧି । ଦେଖି ବଶ ହୋଇବେ ଇନ୍ଦ୍ର ବଧି ॥
ତାଙ୍କ କୁମର ହୋଇ ଜ୍ଞାନାଙ୍କୁର । ମହୀମଣ୍ଡଳେ ହୁଅ ଅବତାର । ୭୧
ନାମ ହେବ ତୋ ଅବନୀତଳଙ୍କ । ଦେଖି ବଶ ହୋଇବେ ତନଲୋକ ॥
ଏହି ସ୍ୱରଅପାଙ୍ଗୀ ଏବେ ଯାଉ । ତୋରପ୍ରାଣବଲ୍ଲଭୀ ହୋଇ ଥାଉ ॥
ରସତରଙ୍ଗ ନାମେ ଏକଦେଶ । ପୁଷ୍ପଧନ୍ୱ ନାମ ତହିଁ ନରେଶ । ୭୫ ।
ରସବତୀ ନାମ ତାର ବନିତା । ଏ ଯେ ହୋଇବ ତାହାର ଦୁହିତା ।୭୬
ଦେବବରଷେ ସହସ୍ରେ ବରଷ । ତାଙ୍କୁ ଯେନ ତୁମ୍ଭେ ହୁଅ ନରେଶ ॥
ପୂର୍ତ୍ତି ମନୋରଥ ହୋଇ କାମରେ । ପୁଣି ଲୀନ ହୋଇବ ମୋ ଶରୀରେ ॥
ଏ ଯେ ହୋଇବ ରମା ଅଙ୍ଗେ ଲୀନ । ଏତେ କହି ହୋଇଲେ ଅନ୍ତ-
ର୍ଦ୍ଧାନ । ୭୯ । ଏତେ ପଦେ ପ୍ରଥମଛାନ୍ଦ ଶେଷ । ଏଥୁଅନ୍ତେ କହିବା
ଅନ୍ୟ ରସ । ୮୦ । ଦନୁଜ ଦାନବ ସଗୋଷ୍ଠ ନିଦାନ । ହର ଲୋକନାଥ
ଯାତ୍ରା ଦହନ । ୮୧ । ଜଗନ୍ନାଥ ବଳଭଦ୍ର ଭବାନୀ । ଏହି ପଦ
ଦ୍ରୁପଦ ଅର୍ଥ ତନ । ୮୨ ।

---

# ଦ୍ୱିତୀୟ ଛାନ୍ଦ ।

## ରାଗ ପଞ୍ଚମବରାଡ଼ି, କଳଶାବାଣୀ ।

ଏଥିଅନ୍ତେ ଯେବେ ସୁରବର ହର ବର । ଅବନୀରେ ଜନମ ହୋଇଲା କ୍ଷୀନାଙ୍କୁର । ୧ । ତହୁଁ କଛୁଦନାନ୍ତରେ ପୁଷ୍ପଧନୁ ରାମା । ଗର୍ଭବତୀ ହୋଇଲା ସକଳ ସୁଖଧାମା । ୨ ॥ ଶାତକୁମ୍ଭ ସମାନ ସୁନ୍ଦରୀ ଅଙ୍ଗ-ଦେଶ । ଦୋହଦ ପାରଦ ଲାଗି ରଜତ ସଦୃଶ । ୩ । ଦିନୁ ଦିନୁ ବୃଦ୍ଧି ହେଲା ଅଳସ ଉଦର । ପୀନ ହେଲା କ୍ଷୀଣ ମଧ୍ୟ ଗୁରୁ କଳେବର । କୃଷ ହେଲା ନୟନ ଚଞ୍ଚଳ ରଙ୍ଗଭଙ୍ଗ । ବଷଦ ଭାବକୁ ତା ଭଜିଲେ ପୁନର୍ବିବ । ୫ । ପାଣ୍ଡୁର ଦଶିଲା ଶଶିଖଣ୍ଡଗଣ୍ଡ ତାର । ବଇଙ୍ଗ ଦଶିଲା ଗୁରୁ ସୁରଙ୍ଗ ଅଧର । ୬ । ସାଧରେ ଭୋଜନ କଲେ କରଇ ବମନ । ଅହର୍ନିଶି ଶୟନେ ପ୍ରବେଶ କଲା ମନ । ୭ । ଉଠିବାର ମଣଇ ସେ ପର୍ବତ ମାନସ । ପଦୁଣ୍ଡକ ଗମନ ମଣଇ ଶତ କୋଶ । ୮ । ସୁରତରସରୁ ଚିତ୍ତ ହୋଇଲା ବାହାର । ଗରୁ ହେଲା ଅଙ୍ଗକୁ ବସନ ଅଳଂକାର । ୯ । ନ କହଇ ବଚନ କହିଲେ ଜୃମ୍ଭା ଅସେ । ଇତର ଦ୍ରବ୍ୟରେ ତା ସେନେହ ପରକାଶେ । ୧୦ । ସ୍ତନରୁ ତା କଠିନତା ଖେଳେ ତୁଟି ଗଲା । ଅଗ୍ରଭାଗେ ଚୁଚୁକ ଶ୍ୟାମତା ପ୍ରକାଶିଲା । ୧୧ କଇଳାଶ ଶିଖରେ କି ଶିଶୁ ନବଘନ । ହରଣିରେ ବପଗ୍ରତ କାନନୀ ଶୋଭନ । ୧୨ । ଦଶମାସ ସମ୍ପୂର୍ଣ୍ଣେ ଦୁହିତା ହେଲା ଜାତ । ଯେସନେ କ ଜଳଧିରୁ କମଳା ସମ୍ଭୂତ । ୧୩ । ଜନମ ମାତ୍ରକେ ଶୋଭା ପାଇଲା ଅବନୀ । ମଧୁକାଳ ପ୍ରବେଶେ ଯେମନ୍ତ ପୁଷ୍ପବନୀ । ୧୪ । ମକରଲଗ୍ନେ ଅଛନ୍ତି ସୋମଜ ଭାର୍ଗବ । ରୋହିଣୀ ବୃଷରେ ଶଶୀ କକଡାରେ ଜୀବ । ୧୫ । ତୁଳରେ ଶଉରି ଏହା ସଙ୍ଗତେ ଭୂମିଜ । ମିଥୁନେ ସିଂହିକାସୁତ ମୀନେ ଗ୍ରହରାଜ । ୧୬ । ଚଇତ୍ର ଶୁକ୍ଳ ଯେ ପଞ୍ଚମୀ ଗୁରୁବାରେ । ଜାତ ହେଲା ନୃପତନନ୍ଦନୀ ଶର୍ବରୀରେ । ୧୭ । ଶଶାଙ୍କ

ବେଳାରେ ଜାତ ନୃପତିଦୁଲ୍ଲଣୀ । ଗମ୍ଭୀର ଘନରେ ଉଦେ ହେଲା ଯ
ବଜ୍ରକ । ୧୮ । ଜନ୍ମ ହେଲା ବାଳକା ରୋଦନ ଧ୍ୱନି ଶୁଣି । ପଞ୍ଚସ୍ୱା ପିକ
ମୁଖରୁ ଗୃହାନ୍ତ ତରୁଣୀ । ୧୯ । ସୁନ୍ଦରୀ ସ୍ୱରୂପ ନିହିଁ ଯଥୋଚିତ
ଭଲ । ନାମ ଦେଲେ ବୃଦ୍ଧାମାନେ ସର୍ବାଙ୍ଗସୁନ୍ଦରୀ । ୨୦ । ଦେଖିବାରୁ
ସ୍ନେହରେ ଅଧିକ ସବୁ ଜନେ । ଦେଖିଲା ମାଏକେ ଲେଖି ହୃଦୟ
ନୟନେ । ୨୧ । ଚନ୍ଦ୍ର ପ୍ରାୟେ କଳନୀ ଆନନ୍ଦ ଦିଏ ପେନି । ଦିନ
ଦିନ ବଢ଼ଇ ସେ ଚନ୍ଦ୍ରମାବଦନୀ । ୨୨ । ତନୁ ଯାଇ ସ୍ନେହ ତାର ଚନ୍ଦ୍ର-
କଳା ସେହୀ । ଏ ବାହାରେ ହୃଦୟର ପାରଇ ସେ ମୋହି । ୨୩ ।
ଦେଖୁଥାଇ ନରେଶ ସୁତାକୁ ପୁନଃପୁନଃ । ଯେସନେ ରଙ୍କ ଦେଖୁଥାଇ
ଦରିଦ୍ର ରତନ । ୨୪ । ଯହିଁ ଥିଲେ ସୁତା ତା ମନରେ ଥାଇ ଏକା ।
ପ୍ରବାସିନାଥଙ୍କ ମନେ ଯେସନେ ରସିକା । ୨୫ । ଦେଖନ୍ତି ନୃପ-ସୁତାକୁ
ଯେତେ ବୃଦ୍ଧବୃନ୍ଦ । ପଡ଼ିବେଳେ ନ ଅଧିକ ଆଶୀର୍ବାଦ କରି । ୨୬ ।
ବାଳକାଗାବରେ ରେଣୁ ଖେଳରେ ଲାଳସ । ଯାହା ଦେଖି ରେଣୁ
ହେବ ମହେଶ ତାପସ । ନବମ ବରଷ ଯହୁଁ ପ୍ରବେଶ ହୋଇଲା ।
ରେଣୁ ଖେଳ ସୁଖରୁ ତା ମନ ଛୁଟିଗଲା । ୨୮ । ସଖୀ ସଙ୍ଗେ
ଖେଳଇ କଣ୍ଢାଇମାନ ପେନି । ତହିଁ ପୁଣି କରଥାଇ ପୁରୁଷ କାମିନୀ ।
ସେସନ ମନେ ତାଙ୍କର ବନ୍ଧ ଲୀଳାମାନ । ମହାସୁଖୀ ହେଉଥାଇ
କଣ୍ଢୋଇରତନ । ୩୦ । ରାଣୀ ହୋଇଥିଲେ ତା ସାରଦା ଜନ୍ମାନ୍ତରେ ।
ସବୁ ବିଦ୍ୟା ଜାଣିଲା ଶିକ୍ଷଣ ମାଏକରେ । ୩୧ । କେତେଦିନ ଅନ୍ତରେ
ବାଳକାବିଶେଷ । ଯଉବନ ଦଶା ଆସି ହେଲା ପରବେଶ । ୩୨
ଅତିଶୟ ଶୋଭା ତନୁ ହୋଇଲା ଯୁବତୀ । ପୁଷ୍ପଦନ୍ତୀ ହୋଇଲା ବ
କାଞ୍ଚନବ୍ରତତୀ । ୩୩ । କ୍ଷୀଣ ହେଲା କଟି ପୁଷ୍ଟ ନିତମ୍ବମଣ୍ଡଳ । ଅତି-
ଶୟ ପୃଥୁଳତା ଉରଜ ଯୁଗଳ । ୩୪ । ଗୁରୁ ହେଲା ଲଜ୍ଜା ଲଘୁ
ହୋଇଲା ତା ହାସ । ସୁନ୍ଦରୀ ସର୍ବାଙ୍ଗ ଶୋଭା ଦଶିଲା ବିଶେଷ । ୩୫

ଲକ୍ଷି ନୋହେ କହିବା ଗୃହିଁବା ଭଙ୍ଗି ତାର । ସହିବ ହୋଇଲା
ନେଇ ଗମନ ମନ୍ଥର । ୩୬ । ରତିଶାସ୍ତ୍ର ପଠନେ ପ୍ରବେଶ ହେଲା
ମନ । ଅନୁକ୍ଷଣ ହେଉଥାଇ ଅନ୍ୟ ବେଶମାନ । ୩୭ । ଅନ୍ୟସ୍ତ୍ରୀଙ୍କେ
ଅବଧାନ କଲାପାଏଁ ହୋଇ । ସଖୀ ମୁଖୁଁ କାମ-କେଳିକଳାପ
ଶୁଣଇ । ୩୮ । ସାହିତ୍ୟ-ବିକାର ତାର ଉପୁଜିଲେ ଅଙ୍ଗେ । ଗୋପ୍ୟ
କରି ନେଉଥାଇ ଅନ୍ୟ ପରସଙ୍ଗେ । ୩୯ । ଛଳୁଥାଇ ସକଳ ବଚନ
ପରିହାସେ । ନେଉଥାଇ ରଜନୀ ଦିବସ ନାନାରସେ । ୪୦ । କରୁ-
ଥାଇ ନିରତେ ବକ୍ଷର ପ୍ରତିଅଣା । କହୁଥିଲେ ଫୁଲୁଥାଇ ତିଳଫୁଲ
ନାସା । ୪୧ । ଅପଣାର ଚରଣ ହଂସକ ଧ୍ୱନି ଶୁଣି । ପଛକୁ ଫାଳଟି
ଗୃହିଁଥାଇ ପୁଣପୁଣି । ୪୨ । କୁଚଯୁଗ ବଦନପଦ୍ମିନୀନ୍ଦ୍ର ବଢିଲାରୁ ।
ସେହିଠାରୁ ରହିଲେ କି ଏମନ୍ତ ବଶ୍ୟ । ୪୩ । ଚନ୍ଦ୍ରଶେଖର ହେବାର
ସିନା ପ୍ରରୂଷାର୍ଥି । ଚିତ୍ତେ ଶବଦ ଅମୃତାରେ ହେଲା ସାର୍ଥି । ୪୪ ।
ଅତି ଗୁରୁ ପୃଥୁଳ ଉରଜ ଯୁଗ ଅଛି । ନ ପାଇଲେ ନେଣୁ ତ୍ରିଷ୍ଟୁପଦ
ଦିଶ ଲକ୍ଷି । ୪୫ । ଉର୍ଦ୍ଧ୍ୟକ ଗମନେ କର୍ଣ୍ଣିଗର୍ବ ଦେଖି ପଥେ । ସତ-
ଖଳ ହୋଇଛନ୍ତି ତେଣୁ ସିଂହ ଅଥେ । ୪୬ । ଗମ୍ଭୀର ସୁନ୍ଦର ନାଭି-
ଠାରୁ ଲୁଚଯାଏ । ସୂକ୍ଷ୍ମତମ କୃଷ୍ଣରୋମରାଜି ଶୋଭା ପାଏ । ୪୭ ।
ପ୍ରେମବନ୍ଧ ନୂତନ ସେ କୃଷ୍ଣଭୃଙ୍ଗଚୟ । ବାହାରିଲେ କମଳରୁ ଜାଣି
ଚନ୍ଦ୍ରୋଦୟ । ୪୮ । ବିମୁଦ୍ରିତ ଦେଖି ବଢି କମଳ ଦୁହିଁଙ୍କ । ଗମନ
ରଚନ କଲେ ନାଭିସରସୀକ । ୪୯ । ବଳାଦୋଷେ ଉପମାସମୂହ
ଗଲେହାରି । ଅଯଶଅପଚାଳା କି ରଖିବ ଗୋପ୍ୟ କରି । ୫୦ ।
ଏବେ ଶୁଣ ବିବେକ-ପୁରୁଷ ଅନ୍ୟ ଦସ । ଏମନ୍ତେ ଗଲାକ ତହିଁ କେତେ-
ଦିନ ଦିବସ । ୫୧ । ମାଘ କୃଷ୍ଣପକ୍ଷଠାରୁ ଯବଗାରତନ । ଅନ୍ତିମ୍ର-
ନ୍ତ ଚତୁର୍ଦ୍ଦଶୀ ଶିବ ଦରଶନ । ୫୨ । ନମସ୍କାରଦାନେ କୁଚ ମୁଗ୍ଧ
ଦେଖି ତାର । ସେହିଠାରୁ ପାଷାଣ ହୋଇଲେ ଶିବା ହର । ୫୩ ।

ସୁବର୍ଣ୍ଣ କରକମଳ ଚମ୍ପକ ଅଙ୍ଗୁଳୀ । ପୁଷ୍ପ ଦେଉଁ ଲାଗିଲା ସେ ହରର
ମଉଳୀ । ୫୪ । ସେହି ଉପଗୃହରେ ହର ହୋଇଲେ ସାକ୍ଷାତ । ବୋ-
ଇଲେ ଯେ ମନୋରଥ ମାଗସିରେ ମାତ । ୫୫ । ଅନ୍ତର୍ଗତ ବେଦନା
କି ଗୁପତ ତାହାଙ୍କୁ । ସେନେହେ ବୋଇଲେ ତା ବଚନ ଶୁଣିବାକୁ ।
ଶୁଣି ତା ସୁନ୍ଦରୀ ଦୃଷ୍ଟି କରୁ ଅବନୀକ । ବୋଇଲା ମୁଁ କି କହିବ ଅନ୍ତର-
ଯାମୀଙ୍କି । ୫୭ । ଏହା ଶୁଣି ଆଜ୍ଞା ଦେଲେ ଉମାପ୍ରିୟତମ । ତୁମ୍-
ଭୋଇ ଦିବସେ ହୋଇବ ପୂର୍ଣ୍ଣକାମ । ୫୮ । ଅଜ ଗତ୍ରେ ଦେଖିବୁ ତୁ
ଯେବଣ ସ୍ୱପନ । ସ୍ୱପନ ବୋଲିବୁ ନାହିଁ ସୁନ୍ଦରୀ-ରତନ । ୫୯ ।
ହରବର ପାଇ ସଖୀ ସଙ୍ଗେ ସେହି ବାଳୀ । ସଦନେ ପ୍ରବେଶ ଯେତେ
ମାନସେ ମଉଳୀ । ୬୦ । ଏହି ସମୟରେ ରସ ଶୁଣ ରେ ରସିକ ।
ଅସ୍ତାଚଳ ବାସ କଲେ ଦିବସନାୟକ । ୬୧ । ଆଶା ମାନବତୀ କି ତା
ବଦନ କୋଟରେ । ସଙ୍ଗ କଲା ଉରଜ ଚରମଅଚଳରେ । ୬୨ ।
କି ଅବା ରଥାଙ୍ଗ ରଙ୍ଗ ଶୈଶବ ସହିତେ । ହୋଇଅଛି ଗୁପତ ମହତ
ମହୀଧରେ । ୬୩ । ଚନ୍ଦ୍ରା କର ନଳିନୀ ବିଯୋଗ ମହାଭୟ । କାନ୍ତ-
ଠାରେ ରଖିଲେ କି ଅନୁରାଗଚୟ । ୬୪ । ଦ୍ୱିଜ ମନ ନ ରହିଲା ବିଷୟ
ମଧ୍ୟରେ । କୁଳବତୀ ସଙ୍କୋଚ ଯେମନ୍ତ ସୁରତରେ । ୬୫ । ବିରହିଣୀ-
ମାନେ ଚନ୍ଦ୍ରାନଳରେ ବୁଡିଲେ । ଦୂତୀମାନେ ବିଦ୍ୟୁତ ପର୍ଯ୍ୟେ ଗତି
କଲେ । ୬୬ । ପଥିକବଣ୍ଟିଙ୍କ ଦୀର୍ଘ ଆଶା ସଙ୍ଗେ ଯେନ । ଅସ୍ତ
ହେଲେ ସକଳଲୋଚନ ଚନ୍ଦ୍ରାମଣି । ୬୭ । ହୋଇଲାକି ଶୃଙ୍ଗାରର
ସୁରଙ୍ଗ ଗମନ । ଆଶା-ନାରୀ ହୋଇଲା କି କୁଙ୍କୁମ ଲେପନ । ୬୮ ।
ବୃକ୍ଷମାନେ ବହିଲେ କି ବଧୂ ନୃପ ବେଶ । ମୌନୀ ପ୍ରାୟେ ହଂସ ମୁଖ ପଦ
ଅପ୍ରକାଶ । ୬୯ । ପୁଷ୍ପବତୀ ବଧୂଙ୍କ ବ୍ରତଭଞ୍ଜନକର । ଦର୍ଶିଲେକି
ବୃନ୍ଦ ବୃନ୍ଦ କୁମାସ୍ୱ ପ୍ରକାର । ୭୦ । ଅଭିସାରୀ ନୟନ ନର୍ତ୍ତକୀ ରଙ୍ଗ-
ପୁର । କି ଅବା ରସିକ ଯାଗ ଅନୁରାଗଭର । ୭୧ । କି ଅବା ଏ
ଚକ୍ରବାକଯୁଗ ଅନ୍ତରକୁ । ନିଜଅଙ୍ଗ କି ଅବା ପଥିକ ଗମନକୁ । ୭୨

ବାରୁଣୀ ଭଜିଲେ ରବି ଛାଡ଼ିଲେ ଅମ୍ବର । ଅମ୍ବର ଛାଡ଼ିଲେ ଯେଣୁ
ଗମିଲେ ବାନର । ୭୩ । ମନ୍ଦ ମୁଦ୍ରିତ ନଳିନୀ ଅନ୍ତର ମଧୁପ । ବାହ୍ୟା-
ରନ୍ତେ ଦିଶୁଅଛି ଯେମନ୍ତ ସ୍ୱରୂପ । ୭୪ । କାନ୍ତବିନା ବିଷଗୁଲା
ହୁଏ କି ଅଶନ । ସଂହୃତ ନ ପାରି ଗୁଣ କରେ କି ବମନ । ୭୫ ।
କୁମୁଦିନୀ ପାଶେ ଅଳି ମଞ୍ଜୁବାଣୀ ଘୋଷେ । ପ୍ରିୟାହୀନ ପୁରୁଷ ଯେ-
ମନ୍ତେ ଚେଟୀ ପାଶେ । ୭୬ । ଦରଶନେ ମହିତ ନଳିନୀ ପତିରବି ।
ମୃଦୁହାସ ପ୍ରକାଶିଲେ ଖଳ କଇରବ । ୭୭ । ଅତି ସଖ୍ୟ ଦିବସ ଦିଶିଲା
ହୁତଶିଖା । ଯଉବନ ବିହୀନେ ଯେମନ୍ତ ବାରନାରୀ । ୭୮ । ସ୍ୱପନ
ସମ୍ପତ୍ତି ପ୍ରାୟେ ଚେତେବଡ଼ ରଙ୍ଗ । କ୍ଷଣକେ ଭିତରେ ସେ ଯେ ହୋଇଲା
ବିରଙ୍ଗ । ୭୯ । ଦୃଷ୍ଟି ହେଲା ଯହୁଁ ପାନ୍ଥ ଯିବାପଥେ ଗୃହଁ । ରହିକି
ପଥିକ ତାକୁ ବୋଇଲା ଶୁଭାଇ । ୮୦ । ମିଳିବ କି ଏ ନଗରେ ଏମନ୍ତ
ମାଦକ । ନ ଛାଡ଼ିବ ମନରୁ ଜୀବନ ଥିବାଯାକ । ୮୧ । ରହିବ ମୁକୁ-
ଟରେ ଏ ରହସ ବଚନ । ତାହା ଶୁଣି ବୋଇଲା ଏ ନାଗରରତନ । ୮୨
ଏ ନଗ୍ରକୁ ବାହୁଅଛୁ ଶୁମ୍ଭପରି ନର । ବିମ୍ବଫଳେ ଅଛୁ ଯହିଁ ଦ୍ରାକ୍ଷାରୁ
ମଧୁର । ୮୩ । ଯେ ଯେମନ୍ତ ଯେଣେ ଯାକୁ ଅଛି କି ଗ୍ରାହକ । ମିଳଇ
ସକଳ ଛାଡ଼ି ଜନନୀ ଜନକ । ୮୪ । ଝୁଣ୍ଟି କରି ଦେଖିବାରେ ପୁଷ୍ପର
ସ୍ତବକ । ପିଣ୍ଡାରେ ବସିଲା ରତିପଣ୍ଡିତ ପଥିକ । ୮୫ । ତାହା ଦେଖି
ବୋଇଲା ଚତୁରୀ ଗୃହବତୀ । ବଣିଜାରମାନଙ୍କର ନୁହଇ ଏ ସ୍ଥିତି । ୮୬
ଗ୍ରାମେ ଦିଶୁଅଛି ଜାହିଁ ମୋ ସଦନେ ନାହିଁ । ଧନକାମ
ଧଇର୍ଯ୍ୟ ଧରିଛୁ ଦେଖି ଏହା । ୮୭ । ନିବିଡ଼ ଅନ୍ଧାର ଘୋର
ବହି ତା କ ପାରି । ନୀଳବାସ ପିନ୍ଧିଲା କି ଜଣୀ ଅଭିସାରୀ । ୮୮ ।
ଥାଇହିଁ ଲୋଚନ ଦେଲା ନ ଥିଲା ବିପତ୍ତି । ଯେଉଁଠାରେ ରସିକା ଯୁବତୀଙ୍କ
ବୃନ୍ଦଗତି । ୮୯ । ବିଯୋଗିନୀ ମଣ୍ଡନ ମଦନସିନ୍ଦୁ କିବା । ଅଭିସାରୀ
ନୟନ ଅଞ୍ଜନପୁଞ୍ଜ ଅବା । ୯୦ । ପଥିକ ଆନନ୍ଦ ପୂର୍ଣ୍ଣଶଶଧର ତମ ।

ସ୍ନେହମତ ସମୁଦ୍ରକୁ ଶଶାଙ୍କ ପ୍ରତିମ । ୯୧ । କିଅବା ଏ କାମକାନ୍ତଙ୍କ
କାଳସର୍ପ । ଦଂଶି ବିନାଶ କରିବ ବିୟୋଗିନୀ ଦର୍ପ । ୯୨ । ଚନ୍ଦ୍ରୋ-
ରେ ପ୍ରକାଶ ହୋଇଲେ ତାରାମାନେ । କି ମୋତିଷୀମନ୍ତୀ ଜଣି ଭରିତ
ଗଗନେ । ୯୩ । ଏ ଘୋର ଅନ୍ଧାର ଜଣି ପ୍ରଥମ ପ୍ରହରେ । ବ୍ୟାପାର
ରେଦରେ ପରବେଶ ହୋଇ ସୁତରେ । ୯୪ । ଯୁବତୀ ସଙ୍ଗରେ ବାରେ
ରତି ହାର ଗଲେ । ନ ଜାଣିଲେ ବାଣିଜେ ଦୁଅରେ ବସିଥିଲେ । ୯୫ ।
ଉନିଦ୍ରେ ଏ ଜଣି ତନ ଲାଗ ନେଲା ବାଳା । ଶେଷଭାଗେ ସଜନୀ ଏ
ସ୍ୱପନ ଦେଖିଲା । ୯୬ । ରତ୍ନମାଳା ବୋଲି ସେ ଯେ ଏକଇ ବଟକ ।
ତହିଁ ନୃପସୁତ ନାମ ଅବଶୀତଳକ । ୯୭ । ରୂପ ଦେଖି ନନ୍ଦିତ
ହୋଇବ କୋଟି କାମ । କିଅବା ଏ ସଂସାର ସୁନ୍ଦର ପୁଣ୍ୟଧାମ । ୯୮ ।
ସୁନ୍ଦରୀ ଶୟନ କଲା ପଲଙ୍କେ ବସିଲା । ହସ ହସ ହୋଇ ତା ଚିବୁକେ
କର ଦେଲା । ୯୯ । ବୋଇଲା ରେ ସୁନ୍ଦରୀ କେତେହେଁ ଯାଉ ନିଦ ।
ପଡ଼ିତୁ ଯେ କୁସୁମଶାୟକ ପରମାଦ । ୧୦୦ । ସେହି ସମୟରେ ତା
ହୋଇଲା ନିଦ୍ରା ନାଶ । ଚାହିଁଲା ସେ ପୁରୁଷରତନ ନାହିଁ ପାଶ । ୧୦୧ ।
ଛନ ଛନ ମନ ତାର ବାଉର ଶରୀର । ଶତଥର ଖୋଜଇ ସେ ପଲଙ୍କ
ଉପର । ୧୦୨ । ନିଦ୍ରାଗଲେ ଦିଶଇ ବା ଏମନ୍ତ ବସ୍ତୁର । ଖୋଜଇ
ନୟନ ମୁଦ ନୃପତିକୁମାରୀ । ୧୦୩ । ବାତୁଳ ପରାୟେ ହୋଇ
ନୃପତିଦୁହିତା । ନିଦ୍ରାକୁ ବୋଇଲା କଲୁ ଏମନ୍ତ ଅନୀତ । ୧୦୪ ।
କେତେ କଷ୍ଟ ପ୍ରିୟ କରିଥିଲୁ ନିଦ୍ରା ତୋତେ । ଅସମୟ କାଳରେ
ଏମନ୍ତ କଲୁ ମୋତେ । ୧୦୫ । କ୍ଷଣମାତ୍ର ଯେବେ ତୁ ଲେଟନେ ଅଛ
ଥାନ୍ତୁ । ସଫଳ ହୁଅନ୍ତୁ ମୋର ଜୀବନ ରଖନ୍ତୁ । ୧୦୬ । କି କହନ୍ତେ
କି କରନ୍ତେ କି ହୁଅନ୍ତା ମୁହିଁ । ନ ଛାଡ଼ୁ କପାଇଁ ଏତେବେଳ ମାତ୍ର
ରହି । ୧୦୭ । ପୁଣି ସଜନୀ ସଖୀଙ୍କେ ଜ୍ଞାନ ହାର ବଉ । ଗେହ୍ଲବେ
ବୋଲୁଅଛ ନିଦକୁ ନାଗରୀ । ୧୦୮ । ଶ୍ରେଣୀ କରିବାକୁ ନାହିଁ

ତୋଠେ କ ନଗରେ । ଏତେ ବଡ଼ ସାହାସ ପଶିଲୁ ରାଜାଘରେ ।୧୦୯।
ତହିଁ ପୁଣି ନରେଶନନ୍ଦନା ଗଲା ଜାଣି । ନେଇଅଛୁ ପ୍ରସୂନବନ-
ମାଳା ଗୋଟି । ୧୧୦ । ଏହା ଯେବେ ଘଟାଇ ପଶିଲୁ ଏଠ କାହିଁ ।
ପିତା ମୋର ଚଉଦଭୁବନ ବରଗାମୀ । ୧୧୧ । ଏମନ୍ତ କ ମଣିଅଛୁ
ତୋହର ମନରୁ । ମୋର ମନେ ବାରତା କେ କହିବ ତାହାଙ୍କୁ । ୧୧୨
ମଣି ମୃଗନାଭି ଯେବେ ଭୁଜଙ୍ଗ ମୃଗଙ୍କୁ । ହେତୁ ହୋଇ ହୁଅନ୍ତି
ଆପଣା ମରଣଙ୍କୁ ।୧୧୩ । ସେହିମତ କର ତୁ ଯେ ଜାଣ ଏତେବେଳୁ ।
ମୋତେହେ ମାରିଲୁ ନିଦ୍ରା ଗୃହ ଜାଣ ଲେଲୁ । ୧୧୪ । ତହୁଁଗରେ
କୁମାରୀ କୁମର ଭାବନାରୁ । ଏକରସ ହୋଇଲେ ସେ ବପୁଲ ରମ୍ୟୋରୁ ।
ଏହିମତ ତାହାଙ୍କୁ ଦଶଇ ଏକା ପ୍ରିୟ । ସମସ୍ତ ବିଷୟମାନ ଦଶଇ
ଅପ୍ରିୟ । ୧୧୫ । ସେହି ସମୟରେ ହେଲା ଅରୁଣ ଉଦୟ ।
ହୋଇଲାକ ପରାଣପର୍ଯ୍ୟାର ନିଦ୍ରା କ୍ଷୟ । ୧୧୬ । ଗୃହିଁଲା ବସିଛି ବାଳା
ଚଞ୍ଚଳ ହୋଇ । ବେନି ନୟନରୁ ଅଶ୍ରୁ ଯାଉଅଛି ବହି । ୧୧୮ ।
ବେଗେ ଉଠି ସହଚରୀ ବଜ ତାକୁ କୋଳ । ବୋଇଲା ତୋ କେଣୁ
ଅଇଲା କାହୁଁ ଜଳ । ୧୧୯ । ବଜାର ମାଏଙ୍କୁ ସେ ଯେ ସଖୀ ବାଣୀ
ଶୁଣି । ଲଜ୍ଜାସଙ୍କେ ଉତ୍ତାଉଳା ଗୂଢ଼ ତରୁଣୀ ।୧୨୦। ବୋଇଲାରେ
ସଜନୀ ପାମର ନିଦ୍ରାବଶେ । ଏହିକ୍ଷଣି ସ୍ୱପନେ ନ ଥିଲୁ ମୋର
ପାଶେ । ୧୨୧ । ବଜେଇ ତଥିଲା ଷଣେ କ୍ଷଣେ ପରକାଶ । କ୍ଷଣକେ
ବୁଝିଲି ପୁଣି ସେହି ଘନେ ବାସ ।୧୨୨। ଯୋଗୀ ପ୍ରାୟେ ଜଗତ ମଣଇ
କୃଷ୍ଣପ୍ରିୟ । ବିଷରୁ ଅଧିକ କରି ମଣଇ ବିଷୟ । ୧୨୩ । ତଥାପିହିଁ
ସଜ୍ଜନାଙ୍କ ନ ଜାଣିବା ପାଇଁ । ନକୋଢ଼ା ସ୍ୱରୂପ କ୍ଷତ ପ୍ରାୟେ କରେ ଗୃହିଁ।
ଦୋଷ କର ନ ଯେବେ ଏ କଥା ମୋର ବୁଝ । ପଞ୍ଚାଙ୍ଗ ବର୍ଣ୍ଣିନା ଛାଣ
କହିଲି ଏ ଥରେ । ୧୨୪ । ଗଜିତର ଦୂଷଣ ଭୂଷଣ ଦୂରନ୍ତ ।
ଜାଣ ଲୋକନାଥ ଦ ସ ଛନ୍ଦେ ସମାପତ । ୧୨୫ ।

---

# ତୃତୀୟ ଛାନ୍ଦ ।

## ରାଗ ମଙ୍ଗଳବରାଡି , ମୁନିବର ବାଣୀ ।

ଶୁଣ ହେ ରସିକଜନେ । ଏଥିଅନ୍ତେ ସାବଧାନେ । ସର୍ବାଙ୍ଗସୁନ୍ଦରୀ ଅଙ୍ଗ । ବର୍ଣ୍ଣିନା ରସତରଙ୍ଗ । କରୁଛି ଖ୍ୟାତ ସଂସାରେ । ମୋର ବୁଦ୍ଧିରେ ଏ ।୧। ସୁନ୍ଦରୀ ସର୍ବାଙ୍ଗଦେଶ । ଶୋଭାସିନ୍ଧୁ ଏକ ଲେଶ । ଅଶେଷ ଯୁଗରେ ଶେଷ । ବର୍ଣ୍ଣିଲେ ନୋହିବ ଶେଷ । ତଥାପି ମୋର ବୁଦ୍ଧିରେ । କହୁଛି ଧୀରେ ଏ ।୨। ମଳିନ ଅଞ୍ଜନ ଯେହ୍ନେ । ରଞ୍ଜିଲେ ନାରୀ ନୟନେ । ନ ହରଇ କାହା ମନ । ସେରୂପେ ମୋର ବଚନ । ସେ ଚରଣେ ହୋଇ ମେଳ । ହେବ ଉଜ୍ଜ୍ୱଳ ଏ ।୩। ନୀଳ ପ୍ରଲମ୍ବ କୁଟିଳ । କାମିନୀ କୁନ୍ତଳକୁଳ । ଦିବ ଲୋକନେ ଶ୍ରମସ୍ୱା । ଗଲେ ନଷ୍ଟ ଦୂର କର । ଅଧୀର କର ନୟନ । ପଡିଲେ ବନ ଏ ।୪। ଯାହା ଦେଖି ନବଘନ । ଅନ୍ତରେ କରେ ରୋଦନ । ଅଶ୍ରୁଲେ ସଜଳ ଛଳ । କର ମୂର୍ଚ୍ଛେ ଅଶ୍ରୁଜଳ । ବହୁତ ଅଛି ପ୍ରମାଣ । ଆହୁର ଶୁଣ ଏ । ଆଉ ରୋଷବନ୍ତ ହୋଇ । ଶର୍ପଜନ ଥାଇ ବହି । ଘୁଡୁଥାଇ ଘନ ଘୋଷ । କ୍ଷଣକେ ହୋଏ ବିରସ । ବେଗେଣ ଚଞ୍ଚଳ ହୋଇ । ଯାଇ ପଳାଇ ଏ ।୬। ତରୁଣ ତମାଳକୁଳ । ଏ ଯେନ ନୁହନ୍ତି ତୁଲ । ଦେଖି ସେ କୁନ୍ତଳ ଶୋଭା । ଦନ୍ତ ଦନ୍ତ ହୃତପ୍ରଭା । ଘୁଡଇ ସେ ବେଳେ ବନ । ଅନ୍ତରେ ମ୍ଳାନ ଏ ।୭। ଏଥେନ କାଳନ୍ଦୀବନ । ନୋହିଲ ଗାକୁ ସମାନ । ଯା ସଙ୍ଗେ ହୁଅଇ ସଙ୍ଗ । ଧରଇ ତାହାର ଅଙ୍ଗ । ଆହୁର ମହତ ଦୋଷ । ନୋହେ ସୁବେଶ ଏ ।୮। ଶୋଭା ଦେଖି ସଖୀ ଗଣ । ଶକ୍ତିଧର ଆଣେ କଣ । ଶିରୋଧାର୍ଯ୍ୟଙ୍କ ସଙ୍ଗକୁ । ଲେଖି-ବା କ ମୁଖପଙ୍କୁ । କଜ୍ଜ୍ୱଳ ହେବାକୁ ସମ । ନୁହଇ କ୍ଷମ ଏ ।୯। ରଚନ୍ତି ମଦନ ପାଶ । ବାନ୍ଧିବାକୁ ବା ମାନସ । ଆଦ୍ରାଣେ ଯୁବା ମାନସ । ଘୁଡଣ ନବ ସାରସ । ଇଙ୍ଗ ନ ଯୁଡଲେ ପାଶ । ବାନ୍ଧ ଦବସ ଏ ।୧୦। ତେବେ

କାମଆଦରଣ । ସୁନେତ୍ରୀ ମୁଖ ସଦୃଶ । ହେବ ଯେବେ ଥିବ ଲକ୍ଷ ।
ସରସୀରୁହ ପ୍ରକଭ । ଥିବ ଅନ୍ତର ଶରଦ । ଚନ୍ଦ୍ର ଅହ୍ଲାଦ ଏ । ୧୧
ଯେବେ ନବ ଇନ୍ଦୀବର । ପ୍ରଖର ବାଡେ ଅଧୀର । ହୋଇଥିବ ସବୁ
କାଳେ । ଥାଇ ଶଶଧର କୋଳେ । ତେବେ ତା ନେତ୍ରକୁ ସରି ।
ବୋଲି ନ ପାରି ଏ । ୧୨ । ସଦା ବିକଚ କମଳ । ମଧ୍ୟରେ ଥିବ ଭ୍ରସଲ ।
ପୁଷ୍ପଶରଆଦରଣ । ଲାବଣ୍ୟଜଳରେ ବାସ । କରିଥିଲେ ଏବା ସମ ।
ହେବାକୁ କ୍ଷମ ଏ । ୧୩ । ଯେବେ ସୁମନସଧନୁ । ହେବ ମରକତ-
ଧନୁ । ଧ୍ୱଜକୁ କରିବ ଶର । ସେଠାରୁଁ କେହି ବାହାର । ଜିଣିମ
ତ୍ରିଶୂଳଧାରୀ । ତେବେ ବା ସରି ଏ । ୧୪ । ଚପଳ ନେତ୍ରକୁ ସରି ।
ମୃଗକୁ ବୋଲି ନ ପାରି । ଅବଲୋକନେ ଯାହାକୁ । ଅଞ୍ଚେ କଲେ ଅର-
ଣ୍ୟକୁ । ଚଞ୍ଚଳ ଭାବ ନିମିଷରେ । ଜାତ ହସାରେ ଏ । ୧୫ । ତାହାର
ଶରେ ପ୍ରଯୁକ୍ତ । କରିବ କି କାମବାଣ । ଖଞ୍ଜନ ଚରଣ ଯେବେ ।
ନ ଛୁଇଁବ କ୍ଷିତି ଲବେ । ତେବେ ତା ନେତ୍ରକୁ ସରି । ବୋଲି ନ ପାରି
ଏ । ୧୬ । ଦେଖିଲେ ଶ୍ରବଣଦେଶ । ମଦନ ଧନୁର ପାଶ । ବଣ୍ଡ
ଦେଖିଲେ ଆଦର । ଦର୍ପଣରୁ ହେବ ଦୂର । ଶୁଣିଲେ ଭୁଲଧାରୂପ ।
ଧନୁର ଗୁଣ ଏ । ୧୭ । ନାସା ଶୋଭା ଶୁକ୍ତ ହେଉ । ଗଲେ ଜନ୍ତ
ଦୂର କରୁ । ତିଳକ ଶେ ଭାକୁ ସମ । ନୁହଇ ତିଳକୁସୁମ । ପକ୍ଷିରାଜ
ଭୟ କରୁ । ସେବଳ ହରୁ ଏ । ୧୮ । ଦେଖି ତା ଅଧରଦେଶ ।
କନ୍ଦୁକ ଧ୍ୱଜଙ୍କ ବାସ । ନ ଥାନ୍ତା ବନ୍ଧୁଜୀବ । ହୋଇଥାନ୍ତା ସୁଧା-
ମୟ । ଦନ୍ତବାସ ପ୍ରତିବିମ୍ବ । ହେବାକୁ ବମ୍ବ ଏ । ୧୯ । ପ୍ରବାଳ
ଯେବେ ନଷ୍ଟୂର । ଗୁଣକୁ କରିବ ଦୂର । ପଲ୍ଲବ ସଦା ନବୀନ । ବୟ-
ସେଁ ନ ହେବ ଅନ୍ୟ । ଅନ୍ତରେ ଥିବ କୁସୁମ । ତେବେ ବା ସମ ଏ । ୨୦ ।
ଅରୁଣଅଧର ଦେଖି । ଅରୁଣ ହୋଇଣ ଦୁଃଖୀ । ଶରଣ ହେଲା
ଅରୁଣେ । ରହିଛି ସାରଥିପଣେ । ଦେଖୁଛି ଅନ୍ଧ ଜଗତ । ଆଜହିଁ

ଖ୍ୟାତ ଏ । ୨୧ । ସୁନ୍ଦରୀ ସୁନ୍ଦର ଉଦ । ଦରଶନରେ ବିଷାଦ ।
ଲଭି ମୁକୁତା ହାତରେ । ହୋଇଲା ଛଛନଧ୍ୱରେ । ସେଫଳ ବଲେ
ତାହାର । ହୋଇଲା ହାର ଏ । ୨୨ । ଦନ୍ତଙ୍କ କହିବା ପାଇଁ । ଶାଣେ
ବସି ଘଷି ହୋଇ । ହୀରକ ହୋଇଲା ମୂଲ୍ୟ । ରଦନ ତାର ଅମୂଲ୍ୟ ।
ତେଣୁ ଏ ରଦନ ସମା । କୋହେ ଉପାମା ଏ । ୨୩ । ତାଙ୍କ ମୁଖ ଦେଖି-
ଣ ଭୟ । କରଣ କଲା ଉପାୟ । ବଲଳି ପଉଧାପକ । କରଣ
ରହିଲା ବନ । ସ୍ମିତ ଦେଖି ସୁଧାକର । ସେବଲା ହର ଏ । ୨୪ ।
କଣ୍ଠ ଦେଖି କମ୍ବୁ ଗଲା । ବୟୁଙ୍କର ଅର୍ପେ କଲା । ଶୁଣି ତା ମଧୁର ଭାଷ ।
ପିକ କଲେ ବନବାସ । ଭାରତୀ କର ଶରଣା । ହୋଇଲା ବୀଣା ଏ । ୨୫
ଯେବେ ସୁବର୍ଣ୍ଣକଳଶ । ହୋଇଥିବ ସପୀୟୂଷ । ଅନ୍ତରେ ତହୁଁ ରସ ।
କହିଲେ କୋହିବ ଶେଷ । ତେବେ ତା କୁଚକୁ ସର । ବୋଲି ନ ପାର
ଏ । ୨୬ । କୁଚକୁ ସମାନ କୋକ । ବୋଲନ୍ତି ଅଜ୍ଞାନୀ ଲୋକ ।
ଜାଣି ତାର ଅବିବେକ । ବିଧାତା କହିଲେ ଶୋକ । ଅନ୍ତର ଦୋଷ
ଅପାର । ନୂହିଲ ଥିର ଏ । ୨୭ । ହୃଦୟ ଲାବଣ୍ୟଜଳ । କନମ ହେମ-
କମଳ । କିବା ଭ୍ରମଣାଯୁକ୍ତ । କନକ କେଳକନ୍ଦୁକ । ଉଭ ଗୁପ୍ତ-
ହେମ୍ବୁଟେକ । ଅତ ଛୁଟକ ଏ । ୨୮ । ଲାବଣ୍ୟଜଳ ସମ୍ଭୂତା । କିବା
ହାମ୍ର-କଳ୍ପଲତା । ସରସ ମଞ୍ଜୁ ବପୁଲ । ଚଟୁଳ ଫଳଯୁଗଳ । ଉବକୁ
ମୋହିବାପାଇଁ । ଅଛି ବା କହି ଏ । ୨୯ । ନ ସହି ଗରଳତାପ ।
କି ଅବା ପ୍ରମଥାଧିପ । ଖଣ୍ଡେନ୍ଦୁଶେଖର ଅଛି । ଅର୍ଦ୍ଧେ କଲେ ପୂର୍ଣ୍ଣ
ଶଶୀ । ତଥିପରେ ମୋତହାର । ଜାହ୍ନବୀଧାର ଏ । ୩୦ । ଏଣୁ ଏହି
କଳ୍ପଲତା । ଯେଣୁକର କାମଦାତା । ସୁବାସେ ଯେଣୁ ମହୁଲ । ତେ-
ଣୁ ଏ ମଲୟାଚଳ । ମେରୁ ଏ ଅମୃତସ୍ଥାନ । ଯେଣୁ ସୁବର୍ଣ୍ଣ ଏ । ୩୧ ।
ଦରଶନେ କୁମ୍ଭିକୁମ୍ଭ । ହୋଇଣ ବଗଡଦମ୍ଭ । ସେବା କଲା ନାଗଶିର ।
କଞ୍ଜ ସେବଲା ଶ୍ରୀଧର । ବଢ଼ପୀ ହୃଦ୍ ମଣ୍ଡଳ । ତାଳ ଶ୍ରୀଫଳ ଏ । ୩୨ ।
ବାହୁ ଅବଲୋକନରେ । ହେମମୃଣାଳ ଭୟରେ । ନ ରହି ଛିଦ୍ର ମଧ୍ୟରେ ।

ପଶିଲେ ମାନସସରେ । ଅଛହିଁ ରତ୍ନ ନ ଛାଡ । ଅଛନ୍ତି ବୃତ ଏ, । ୩୩
ସେ କାଳେ ଚମ୍ପକଦାମ । ହେବ କି ସୁବାହୁ ସମ । ଶିରୀଷ କୋମଳ
ହୋଇ । ପଦ୍ମନୁମ୍ଭା ଥିବ କହି । ସଙ୍କୋଚ-ଦଳ-ଚମ୍ପକ । କଳପଞ୍ଚକ ଏ । ୩୪
କଟି ଦରଶନେ ହରି । ଅନ୍ତ୍ରେ କଲେ ଗିରଦରୀ । ଡମ୍ବରୁ ନିର୍ଗୁଣପଣ ।
ଦେଖି ବକ୍ଷ୍ୟରେ ବନଜ । କର ପ୍ରହାରନ୍ତି ନରେ । ଦେଖ ଫସାରେ ଏ
। ୩୫ । ଦେଖି ତା ଜାନୁଯୁଗଳେ । ଦମ୍ଭ ହୃଦ ହେଲା ଜଳ । ଜାନୁ
ଅର୍ଥେ କରଜର । କରଥିଲା ବେଦବର । ଯନ୍ତୁଁ ସେ ସମ ନୋହିଲା ।
ପଣ୍ଡୁରେ ଦେଲା ଏ । ୩୬ । ଭୂତ-ଅଚଳ ନିକଟେ । ନାଭି-ସରୋବର
ତଟେ । ରୋମଗଳି ପାଶ ଧାରି । ରଖିଛି କାମ-ଶବର । ଧରିବ ଚଞ୍ଚଳ
ପକ୍ଷୀ । ମାନସ ଅଛି ଯେ । ୩୭ । ଅଙ୍ଗୁଳି ଦେଖି ଅଶୋକ । ସେହି-
ଲେ ପୁଷ୍ପଛାପିକ । ନୟନ ଦେଖି ସରୋଜ । ଲଭି ଅଧଶଯ୍ୟ ଲାଜ ।
ଅଗ୍ରେ କଲେ ପଦତଳ । ହୋଇ ନିଶ୍ଚଳ ଏ । ୩୮ । ତନୁ ଶୋଭା ଦେ-
ଖି ତାର । ଚଞ୍ଚଳା ହୋଇ କାତର । ଅଭ୍ରଯୋ କଲା ବାସାଦେ । ଘନେ
ଲୁଚି ବସୁପଦେ । ଅଛହିଁ ଶରୀର ତାର । ନୋହିଛି ସ୍ଥିର ଏ । ୩୯
ଗତି ଦେଖି ରାଜହଂସ । ଅଶନ କରନ୍ତି ବିଷ । ଶଶୀ ସୁଧାହାସ ଦେଖି ।
ଅବନୀ ଗଲେ ଉପେକ୍ଷି । ଦୂରକୁ ଗିରି ସୁନ୍ଦର । କର ବିଚାର ଏ
। ୪୦ । ଏ ଯେ ସର୍ବସ୍ୱତି ହରି । ଦନମଣି ଅଦକରି । ନାଶନ୍ତୁ ମୋର
ଦୁର୍ଗତି । ଗଉରୀ ଭର ନୃପତି । ଫେମବେଣୀ ସୁରମଣି । ଶୁଣନ୍ତୁ ବାଣୀ ଏ
। ୪୧ ।

---

ଚତୁର୍ଥ ଛାନ୍ଦ । ରାଗ କେଦାର ।

ଏକଦିନେ ନାରଦମହଋଷି । ସେହି ନଗ୍ରେ ପ୍ରବେଶ ହେଲେ ଆସି । ୧
ତାଙ୍କୁ ଦେଖିଣ ପୁଷ୍ପଧନ୍ୱ ରାଜା । ଗୁରୁ ଗୋବିନ୍ଦ-ପାଦେ କଲେ ପୂଜା । ୨
ଗଙ୍ଗାସଲିଳେ ଚରଣ ଧୋଇଲା । ପାଦଉଦକ ଶିରେ ଖେପିଲା । ୩ ।
ରତ୍ନପଲଙ୍କେ ବସାଇ ଭୂପତି । ବେନି କର ଯୋଡି ଉଚ୍ଚ

ପୁରତେ । ୪ । ତାର ଦୁହିତାକୁ ଘେନି ଭୂପାଳ । ଆସି ପ୍ରଣାମ କଲା ପାଦତଳ । ୫ । ମୁନିମୁକୁଟମଣି ଏ କନ୍ୟାକୁ । କହ ପ୍ରଦାନ କରିବ କାହାକୁ । ୬ । ଶୁଣି ବୋଲନ୍ତି ଶୁଣ ନୃପବର । ଏହିବନ୍ଧୁ ହୁଅଛି ତତ୍‌ପର । ୭ । ଏହି ଆଗତ ମାଧବ ମାସରେ । ଶୁକ୍ଳପକ୍ଷ ପଞ୍ଚମୀ ଗୁରୁବାରରେ । ୮ । ସ୍ୱୟମ୍ବର କରିବ ତୋ ଆତ୍ମଜା । ଶୁଣି ଆସିବେ ଧନପୁର ରାଜା । ୯ । ମୁଁ ତ ଯାଉଛି ଅଜନ୍ତଁ ମର୍ତ୍ତ୍ୟରୁ । ସ୍ୱର୍ଗଲୋକେ ଜାଣିମେ ମୋହିଠାରୁ । ୧୦ । ଏହା ଶୁଣି ସେ ପୁଷ୍ପଧନୁ ରାଜା । ଶିରକମଳେ ପାଦ କଲା ପୂଜା । ୧୧ । କସ କହିବ ଶ୍ରୀମୁଖରେ ଭୂମ୍ବର । ତୁମ୍ଭେ ଅନ୍ତରଯାମୀ ଯୋଗେଶ୍ୱର । ୧୨ । ଏତେ ଶୁଣି ସେ ମୁନୀନ୍ଦ୍ରମୁକୁଟ । ତାକୁ ଗୃହିଁ ଲେଖିଲେ ଚିତ୍ରପଟ । ୧୩ । ଲେଖା ହୋଇଛି ଦର୍ପଣେ ଜଣୁଛନେ । ବସ୍ତ୍ରେ ସଙ୍ଗେ ରଖିଲେ ସ୍ଥିରମନେ । ୧୪ । ପର ଦେଖାଇବାକୁ ପଟ ଲେଖି । ନେଲେ ଅଜ୍ଞାନ-ଭୁଜଙ୍ଗ-ଶିଖୀ । ୧୫ । ଇନ୍ଦ୍ର ସଦନେ ହୋଇଲେ ପ୍ରବେଶ । ଦେଖି ପ୍ରଣାମ କଲେ ଅମରେଶ । ୧୬ । ଦିବ୍ୟ ଆସନ ଉପରେ ବସାଇ । ତାଙ୍କୁ କହନ୍ତି ହୋଇଣ ବିନୟୀ । ୧୭ । କାହିଁ ଥିଲ କସ କହ ବାରତା । ଭୂତ ଭବିଷ୍ୟ ବର୍ତ୍ତମାନଜ୍ଞାତା । ୧୮ ଘେନି ଅମରଅଧିପ ଦଇଣା । ପଟ ପ୍ରକାଶ କଲେ ମହାମୁନି । ୧୯ । ପଟେ ଦେଖି ସେ ସୁନ୍ଦରୀ ରୂପକୁ । ସ୍ତୁତି କଲେ ସହସ୍ରାକ୍ଷ ଧାତାଙ୍କୁ । ୨୦ । କ୍ଷଣେ ପର୍ଯ୍ୟନ୍ତେ ହୋଇଣ ସ୍ତବ୍ଧ । ବୋଲେ ଧନ୍ୟ ଏ କାହାର ଯୋଷିତ । ୨୧ । ରମା ରତି ଶଚୀ ରମ୍ଭା ଗଉରୀ । କେହି ଏହା ରୂପକୁ ନୋହେ ସରି । ୨୨ । ଏ କେ କହ କଳହପ୍ରିୟମୁନି । ଏ କି ବସ୍ତୁ ସଦାଶିବମୋହିନୀ । ୨୩ । ପୁଣି ବୋଇଲେ ଏ କାହା ଦୁହିତା । ଏହା ଜନମ ଜାଣି ହୈମବତୀ । ୨୪ । କଉତୁକେ ପଡ଼ି ମନ ମୋହିଲେ । ସନ୍ଧ୍ୟ କରାଇ ଅର୍ଦ୍ଧଅଙ୍ଗ ହେଲେ । ୨୫ । ଆଉ କାହାକୁ ଅବା ଦେବା ଲକ୍ଷି । ଏହା ସମ ଦେଖି ନାହିଁ ମୋ ଆକ୍ଷି । ୨୬ । ତାର ମନ ଜାଣି କହନ୍ତି

ମୁଖ । ଏ ଯେ ଶ୍ରେଣୀ ରେବତୀ ନନ୍ଦନୀ । ୨୭ । ପିତା ନାମ ପୁଷ୍ପଧନ୍ୱ
ସ୍ୱଜନ । ମୁ ଯେ ଯାଣିଛି ଏଥିବା ଦୁର୍ଦ୍ଦିନ ॥ ୨୮ । ଏହି ଅଗଢ ମାଧବ
ମାସରେ । ଶୁକ୍ଳପକ୍ଷ ପଞ୍ଚମୀ ଗୁରୁବାରେ ॥ ତ୍ରିଭୁବନ ସକଳ ନରେଶ ।
ତାର ପୁରେ ହୋଇବେ ପରବେଶ । ୩୦ । ଇଚ୍ଛାବର ବରିବ ସ୍ୱୟମ୍-
ବର । ଏତେ କହି ଚଳିଲେ ମୁନିବର । ୩୧ । ଚିତ୍ରପଟ୍ଟଙ୍କୁ ଘେନି ନାଗ-
ବର । ଇନ୍ଦ୍ର ପାଇଲେ ବିରହ ବିକାର । ୩୨ । ଯାଇ ନନ୍ଦନବନ ଏକ-
ଦେଶେ । ମନ୍ଦାକିନୀ କୂଳେ କାମପରବାସେ । ୩୩ । ସରସିଜଦଳତଳ୍ପେ
ଶୟନ । କରି ଚନ୍ଦ୍ରକାନ୍ତ ନାଗେଶ୍ୱରଘନ । ୩୪ । ସ୍ୱପ୍ନମୂର୍ତ୍ତି ଧନ ସିନା ଚଳିବେ ।
ଚିନ୍ତା କରି ରହିଲେ ସେହିଠାବେ । ୩୫ । ଏକଦିନେ ବ୍ରହ୍ମାଙ୍କର
ବାହନ । ବଂଶଉଦ୍ଭବ ଏ ହଂସନନ୍ଦନ ॥ ମାନସରରୁ ଅକାଣ୍ଡେ ଗୋଳୁ ।
ଆସି ସେଠାରେ ଦେଖିଲା ଇନ୍ଦ୍ରଙ୍କୁ । ୩୭ । କରେ ଧରିଛନ୍ତି ଚିତ୍ର-
ପଟ୍ଟ । ପଦ୍ମଶୟନେ ହୋଇ ଉତ୍କଣ୍ଠ । ୩୮ । ତାହା ଦେଖି ପଚାରିଲା
ଖଗଙ୍କୁ । ସେହି କହୁଁ ଜାଣିଲା ଚରିତକୁ । ୩୯ । ମନେ ବିଚାରଇ
ସାରସରୂପ । ଦେଖି ଦେଖିବା ସୁନ୍ଦରୀ ସ୍ୱରୂପ । ୪୦ । ଏତେ ବିଚାରି
ଚଳିଲା ସତ୍ୱରେ । ହେଲା ରସତରଙ୍ଗ କଟକରେ । ୪୧ । ପଦ୍ମପତ୍ରେ
ଲୁଚାଇ ଶରୀରକୁ । ସ୍ନାନକାଳେ ଦେଖିଲା ପ୍ରମଦାକୁ । ୪୨ । ମନେ ବିଚା-
ରଇ ବେଢଗରୁଡ । ଏହା ଶରୀର ଅତିଅଦ୍ଭୁତ । ୪୩ । ବ୍ରହ୍ମଲୋକଙ୍କୁ
ପାତାଳଯାଏ ମୋର । ନାହିଁ ଦେଖିଲା ଏମନ୍ତ ସୁନ୍ଦର । ୪୪ । କେବେ
କୃତାର୍ଥ କଲି ଦରଶନେ । ପୁଣ ବିସ୍ମୟ ହେଉଅଛି ମନେ । ୪୫ ।
ଏହା ରୂପ କଲା ଯେଉଁ ବିରଞ୍ଚି । ସେହି ସମାନେ ପଢ ସ୍ୱବ ରଚି । ୪୬
ସ୍ୱର୍ଗ ପାତାଳେ ମୁଁ ଦେଖି ନାହିଁ । ସେହି କନ୍ଦର୍ପ ହେବ ଏହି ନାଥ ୪୭
ତାର ଦେଖିବା ବଦନ ମଣ୍ଡଳ । ପକ୍ଷୀଜନ୍ମକୁ କରିବା ସଫଳ । ୪୮ ।
ଏତେ ବିଚାରି ଉଡିଲା ସତ୍ୱରେ । ପରବେଶ ରତ୍ନମାଳା-ପୁରେ । ୪୯
ଅଭ୍ରଭୂଷଣ ଗଡ-ଅଦ୍ଧର । ବଡ ଲୋକନାଥଙ୍କୁ ରକ୍ଷା କର । ୫୦ ।

———

### ପଞ୍ଚମ ଛାନ୍ଦ । ରାଗ ଶ୍ରେଣି ।

ବିବେକରଚନ ପକ୍ଷୀ ପ୍ରାକାର ଆକାର ଦେଖି ଲଙ୍କା ଶଙ୍କା କରଇ
ଯାଞ୍ଚି ବୃକ୍ଷଙ୍କ ଉପରେ । ହେମପ୍ରାଚେଶ୍ରୀ ମେଖଳ ନୀଳମଣି ଦେବଅଛ
ନମସ୍କାର କଲା ପୀତାମ୍ବର ବୁଦ୍ଧିରେ । ପୁଣି ବଳୁରଇ ମନଇ । କି ଅବା
ଯଠନ୍ତି ଏହୁ କାଶୀଈଶ୍ୱର । ୧ । ସଉଧ ଲାବଣ୍ୟଜଳ ପଡ଼ିକା ତରଙ୍ଗ-
ଭୁଜ ଗର୍ଜ୍ଜନ ଜନଗହଳ କଶ୍ୱ ମକର । ଗନ୍ଧର୍ବ କନ୍ଦର ମୀନ ସଙ୍କୁଳ ରହି
ସଦନ ଏଣୁ କରି ଜାଣିଲି ଏ କ୍ଷୀରସାଗର । ପୁଣି ବଳୁରି ଏ ସ୍ୱର୍ଗ । ଶୋଭା
ପାଉଛନ୍ତି ଯହିଁ ସୁମନାବର୍ଗ । ୨ । ସମରେ ଜିଣି ନରେଶ ଗରବ କରି
ବିଶେଷ ଅଣିଛି ସକଳ ଯଶ କିଅବା ହେଲେ । କି ଅବା ଏ ସୁମନସ-
ପତିକ ଜିଣି ପୀୟୂଷ ଅଣିଅଛି ଅମର-ନଗରୁ ବା ବଳେ । କିବା ଧାତା
ସ୍ୱଗୁଣେ ଗୁନ୍ଥି । ଅବନୀ-ଶିରକୁ ଦେଲା ମୋତିସୀମନ୍ତୀ । ୩ । ଯେଉଁ
ନଗର କିରତ ଅଛି ନାନା ରତ୍ନେଖଚ ଅଭ୍ରଯହି ଏତାଦୃଶ
ପ୍ରାସାଦରାଜ । ଯାହା ହେତୁ କଲେ ହତ ତରକାଳରୁ ଯାଳତ
ଗଗନ ଗମନ ବ୍ରତ ମିହିରବାଜି । ଏହିପୁର ଦେଖିଲେ ହର ।
କୈଳାସ ବୋଲି ତହିଁ କରିବେ ପୁର । ୪ । ଯେବଣ
ନଗରନର ନ ଜାଣିଲେ ଅବକାର ମଣିନିର୍ମିତ ଅପାର କର-
ଣରୁ । ଯହିଁ ସମ୍ପୂର୍ଣ୍ଣ ଚନ୍ଦ୍ରମା ହେତୁରୁ ନାଇ ଗାଉମା କ୍ଷପୂ ବୃଦ୍ଧି ପଣ୍ଡା
କଲା ଲକ୍ଷ୍ମା ଅଶାରୁ । ଯେଉଁ ପୁର ପତାକା ବାତ । ଦନକର ହୟଙ୍କର
ହରଇ ଶ୍ରାନ୍ତ । ୫ । ତରୁଣୀଏ ଯେଉଁ ପୁରେ ପଦାବଳୀ କସ୍ତୁରୀରେ
କାଳନ୍ଦୀ ପଶ୍ଚେ କଲେ ସୁରସରିତା । ସଘନସାର ଚନ୍ଦନ ବିଳାସୀ ପୁରୁଷ
ସ୍ନାନରୁ ହେଲା ଗଙ୍ଗାପ୍ରାୟେ ଉଚ୍ଚହିତା । ଜଳପୂର୍ଣ୍ଣପ୍ରତିବିମ୍ବସର ।
ଯହିଁ ନ ଜାଣନ୍ତି ପାନ୍ଥେ ଧିକାର ବାଉ । ୬ । ଯେଉଁ ନଗରେ ଉଚ୍ଚ
ଲଭିଲେ ନାହିଁ କରକ ପୀଡ଼ା ଲଭିଲେ ଉରଜ କରଜପୀଡ଼ । ପର କାମ୍ୟ
ସମ କରି କଲା ଯେଉଁ ଦଣ୍ଡଧାରୀ ସେ ପାଉଛି ପରଜୀତ ସଙ୍କାଶୁ ପୀଡ଼ା ।
ଯହିଁ ଛନ୍ତି ବିଯୋଗୀ ଚକ୍ର । ଏହା କାହିଁକି ପାଶ୍ୱବେ ବିଯୋଗୀଚକ୍ର । ୭ ।

ଯେବଣ ନଗରରାଜ ପଦ୍ମିନୀ ମୁଖସମାଜ ବଢାଉଛନ୍ତି କରେ ବଜ
ପଦ୍ମିନୀ ଦନ । ଯେବଣ ନଗର ଜନ ସଦା ଦୀନଭାବେ ଶୂନ୍ୟ ହୋଇ-
ଛନ୍ତି ସଦାନନ୍ଦ ଭାବେ ମଗ୍ନ । ପରଧନ ହରନ୍ତି ବଳେ । ନ ଗ୍ରହାନ୍ତି
ପରଦ୍ରବ୍ୟମାନଙ୍କୁ ଛଳେ । କେବଣ ନାଗରୀ ଚକ୍ରେ କହିବା ଗୃହିଁ ବା
ବକ୍ରେ ଏ ଚତ୍ର ଅବକାଶକ୍ର ରାଜଥ ମାରେ । ଯାଚକ ହୋଇଣ ବନ୍ଦୀ
ବାଳକଜନଙ୍କର ଦ୍ୱନ୍ଦ୍ୱୀ ଶୁକ ସାରିକାଏ ମାତ୍ର ଛନ୍ତି ବନ୍ଦୀରେ । ବନ୍ଧନ
କେବଳ କେଶକୁ । ଲୋଭୀ ବୋଲି ଜାଣନ୍ତି ପ୍ରମାଦାଜନଙ୍କୁ । ୯ ।
ନିର୍ଗୁଣ ଶବଦ ଯହିଁ ବଖୁଙ୍କୁ ମାତ୍ର ବୁଝାଇ ବଡ଼ାପଣ ଅଛି ବନ୍ଧ ହରଣ
ରଥେ । ଭୁଜ ବୋଇଲେ ପ୍ରାଣୀଙ୍କ ବାଦ ବୋଇଲେ ବାଣୀଙ୍କ ହୁଏଇ
ଯେବଣ ପୁର ଜନଙ୍କୁ ପ୍ରଥେ । କଳି ବୋଲି ଜାଣି ଯୁଗଙ୍କୁ । ବିଟପୀ
ବୋଇଲେ ଜାଣି ବୃକ୍ଷମାନଙ୍କୁ । ୧୦ । ନକୁଳ ବୋଲିଣ ଯହିଁ ଅଛନ୍ତି-
ଇ କେବଳ ଅହିଅରି ଅଛି ଏକା ଅଭ ହୋଇ ଥୋଙ୍ଗ । ବସି ବିଟ-
ପୀ ଅଙ୍କରେ ଗାୟନ କରନ୍ତି ଧୀରେ ବନପ୍ରିୟ ଦ୍ୱିଜ ହୋଇ ମଧୁରେ
ସଙ୍ଗ । ସୁଖକର ମଧୁପ ଗୀତ । ପଦ୍ମକରେ କାଳକଣ୍ଠ ମୁଖ ମୁଦ୍ରିତ ।୧୧।
ହଂସା ଉଛୁର ଯାଗରେ ରୁଜ୍ଞୁ ଅଛି ଅଧର୍ମରେ ସଦ୍ଭର ଏକା ଧର୍ମରେ
ସକଳ ଜନେ । ଚନ୍ତା କରନ୍ତି ଗାମ୍ଭୃନେ ବନସ୍ଥ ମାନମା ଜନେ
କହନ୍ତି କେବଳ ମାତ୍ର ସେହି ଭୁବନେ । ବହିଛନ୍ତି ରାଗ ଅଧରେ ।
ମନ୍ଦଗୁଣ ମରାଳଗମନା ଗଢରେ । ୧୨ । ଭିକ୍ଷୁକ ହୋଇ ସନ୍ନ୍ୟାସ
ଚଞ୍ଚଳ ଚଭୁରୀ ବେଶ ଅତ୍ୟନ୍ତ କୁଟିଳ କେଶ ବିଷ ମୃଣାଳ । ମୃଣ୍ଡଙ୍କ
ଦଣ୍ଡଙ୍କୁ ମାଳେ ଯହିଁ ପାଉଛନ୍ତି ଭଳେ ତାଡ଼ନା ପାଉଛି ଯହିଁ ଭଲେ
ମର୍ଦ୍ଦଳ । ଦାନ ବୋଲି ଜାଣି ଦନଙ୍କୁ । ମଧୁପ ବୋଇଲେ ଜାଣି ଭୃଙ୍ଗମା-
ନଙ୍କୁ । ୧୩ । ମୁକୁଲବଲୀ ରଦନ ଚନ୍ଦ୍ର ହାସରେ ଶୋଭନ ପ୍ରବାଳ
ଦନ୍ତବସନ ସୁବର୍ଣ୍ଣ ତନୁ । ନୀଳମଣି ସୁଚକ୍ଷୁର ଶିରୁ ପଦ୍ମରାଗ
କର କମ୍ବୁ କଣ୍ଠ ମୁକୁରବଦନା ସୁତନୁ । ମଣିଲ୍ଲ ଝିଟକେ ମରାଳ ।
ମରକତ ଭୃଙ୍ଗସୂତ୍ରୁ ମଞ୍ଜୁଳ । ୧୪ । ଯେଉଁ ହାଟଙ୍କୁ

ପଣସମାନଙ୍କୁ ତରୁଣୀ ପରି ମଣିଲି ମଦ୍‌ଳମଣି ପ୍ରିୟଦର୍ଶନେ ।
ଲଗଡ଼ ହୃଦୟ କାନ୍ତ ସ୍ତକରକମଳାର୍ଚ୍ଚିତ ବସିଚନ୍ତି ଅନ୍ତର୍ଗୁପ୍ତ
ଉରଜମାନେ । ରମନେଏ ମନୋହାରଣୀ । ଏଣୁ ମଣିଲେ ଏ ମହୀ-
ଧରନନ୍ଦିନୀ । ୧୫ । ମଳୟାଚଳ ସଦୃଶ ଯେବଣ ନଗର ବଣମାନଙ୍କୁ
ମଣିଲି ହଂସବଣକେଶରୀ । ବସ୍ତ୍ରନତାଧର ଟ୍ରିୟ ଧୃତ ବକ୍ର ଗୁରୁ ଭୟ
ଗନ୍ଧସାର ନିବେଦନ ପ୍ରମୋଦଧାରା । ମହାଶିଖ ରତନଧର । କୁଣ୍ଡଳୀ-
କୁଳ ମଣ୍ଡନ ସରସୀଧର । ୧୬ । ଥିବା ନ ଥିବା ସଂଶୟ ଅଛି କେବଳ
ଦୁର୍ବାହ ଉରଜ ନିତମ୍ବବତୀ ମଧ୍ୟଦେଶରେ । ଗନ୍ଧ ଅଛି କାଉଙ୍କରେ
ମଧୁ ଅଛି କୁସୁମରେ ତାମସୀ ଶବଦ ଅର୍ଥ ହୋଏ ରାଏରେ । ଅଚଳ-
ତା ଗମୋସ୍ତନରେ । ମିଥ୍ୟା ଛଡ଼ ସକଳ ଦେଖିଲି ସେ ପୁରେ । ୧୭ ।
ଏପୁରେ ପ୍ରବେଶ ହଂସ ହୋଇ ବଗ୍ବରେ ମାନସ ଦେଖିବ ଏଥି ଅବଶ୍ୟ
ସ୍ପନ୍ଦଶାଧବ । ପଶିଲି ନୃପତି ବାସ ନନ୍ଦାକରେ ଇନ୍ଦ୍ରବଂଶ ଦେଖନ୍ତେ
ବ ଭିଲି ହଂସ ଦୃଶଉତ୍ସବ । ସେହି ପୁର ପଶସରରେ । କୁସୁମକାନନ
ମଧ୍ୟ ମରସୀତୀରେ । ୧୮ । କରନ୍ତି ପାଠକକଳ୍ପତରୁ କମଳ ଅନନ୍ତ
ତଳ୍ପ ଶଯ୍ୟନେ ସଙ୍କଳ୍ପ ଜୀବ ଯିବାକୁ । ପଜରକୀର ବନ୍ଧନେ ନବନଳିନ
ବ୍ୟଞ୍ଜନେ ବନ୍ଧୁ ଛନ୍ତି ସଖୀମାନେ ବେଢି ତାହାଙ୍କୁ । ଦନୁ ଦନୁ ହୋଇଣ
କୃଶ । ରହିଛି ଚନ୍ଦ୍ରମା ଏକକଳା ସଦୃଶ । ୧୯ । ( ଶ୍ଳେଷ )
ଦେଖି ତାହାକୁ ମରାଳ ମଣିଲି ଶରଦକାଳ ମଞ୍ଜୁଳ ରଜନିକର
ପାଣ୍ଡୁର ବଦନେ । ଗ୍ରୀଷ୍ମ ପ୍ରାପ୍ୟେ ତାପବନ୍ତ ବନେ ଉରଜ ବଞ୍ଚିତ ଅପ
କଡ ପୀନ ମାଏ ଦୁଃଖ ପ୍ରକାଶେ । ପୁଣ ବୋଲେ ବିରହୀ ହୋଇ ।
ନବ କନ୍ୟା ଅଛି ପଦ୍ମଶଯ୍ୟାରେ ଶୋଇ । ୨୦ । ଗତ ରାଏରେ
ଦୁଃଖିତ ହୋଇଣ ସେ ନୃପସୁତ ଚନ୍ତା କରଇ ଅଦ୍ଭୁତ କରୁଣା କର ।
ଏହେ ଦୀନଜନବନ୍ଧୁ ଅଶରଣ କୃପାସିନ୍ଧୁ ମୋତେ ଏ ମଦନସିନ୍ଧୁ ମଧ୍ୟରୁ
ତାର । ତାର ତାପ ସଞ୍ଚୟ ହେଉ । ଦୟା କଲେ ଅଚ୍ଛରଞ୍ଜନ ମୁରହ ।

ବୋଇଲେ ହେ ନୃପସୁତ କାଳ ଆସି ଉପଗତ ହେବ ଯେ ଯେତ
ଗରୁଡ ତୋର ପାଶରେ । ତାଙ୍କୁ ତୋ ସମ୍ବେଦନା କହିବୁ ତୁ ନିବେ-
ଦନା କରିବେ ସେ ନିବେଦନା ଅଳ୍ପ ଦିନରେ । ସେହି କଥା ହୃଦରେ
ରଖି । ହଂସ ଅଗତ ପଥକୁ ନେବେ ନରେନ୍ଦ୍ରି । ୨୨ । ସ୍ୱଚ୍ଛ ଷ
ଜଳଧର ଚକୋର ଷ ସୁଧାକର ଦେଖିଲା ସାନନ୍ଦ ଦେଖି ଯୋଇଲେ
ହୁଏଁ । ଭ୍ରମର ଉଠି ତୁରିତ ମଲ୍ଲିକା ପ୍ରଣିପାତ୍ୟ ହେଲେ ତନୁ ପୁଲ-
କିତ କାମ ଉଲ୍ଲାସେ । ଦେଖି ପଞ୍ଜରିଲ ସାରଙ୍ଗ । ଦୁର୍ବଳ ହୋଇଛୁ
କିପାଁ ସୁନ୍ଦର ଅଙ୍ଗ । ୨୩ । ବ୍ୟାଧି ଯେବେ ହୋଇଥାନ୍ତା ଏ ଶୀତଳ
ନ ସହନ୍ତା ନୋହିଲେ ନ ଥାନ୍ତା ବାତ ବିକାର ହେଲେ । ଗ୍ରୀଷ୍ମକାଳ
ଯେବେ ହୋନ୍ତା ଏ ବନେତ ନ ବାଧନ୍ତା ନାହିଁ କାନ୍ତା ଥିଲେ କିପାଁ
କ ଥାନ୍ତା ଭୁଲେ । ପ୍ରମାଣ ଏ ମଦନବ୍ୟାଧି । ଅଙ୍ଗନା-ଔଷଧେ ଭଲ
ହୋଏ ଅବଧି । ୨୪ । ଏ ବ୍ୟାଧିକି ଏଡ଼େ ବୃଦ୍ଧି କଲା କେବଣ ଦୁର୍ବୁଦ୍ଧି
କହି ହେଲିଣି ଚଳୁନାଥି ଷିତମଣ୍ଡନ । ଆନ ଉପାୟରେ ପଣ ଯେମନ୍ତେ
ହୋଇବ ନାଶ ଦୁଃସହ ବାମହୁତାଶ ନୃପନନ୍ଦନ । ଶୁଣି ତାର ମଧୁର
ବାଣୀ । ସବିନୟ ହୋଇ କହେ ଭ୍ରମରମଣି । ୨୫ । ଧରି ତୋ ରଙ୍ଗ-
ଚରଣ ପଣୁଅଛୁ ମୁଁ ଶରଣ ଯାହା ଇଚ୍ଛା ତାହା କର ଆପ୍ତ ତୋର ।
କହିନ୍ତି ତୁମ୍ଭଙ୍କୁ ଯାହା କହିଲତ ଆଗୁଁ ତାହା ଦୁଃଖ ଜାଣି ହେଲ ସାହା
କରୁଣା କର । ବଶିଷ୍ଠ ଜନଙ୍କ ପୁରତ । ବହୁତ କହିବା କଥା ନୋହେ
ଉଚିତ । ୨୬। ଚକ୍ରଧର ଚନ୍ଦ୍ରା କରି ଚନ୍ଦ୍ରାଚତ୍ମ ମନୁ ହିଇ ସୁଖୀ ହୋ-
ଇଥାଅ ଦୁଃଖିଜନବନ୍ଧୁ । ଅଳପ ଦିନେ ଅବଳା ସଙ୍ଗତେ କରିବ
ଲୀଳା ହେବ ପୁଷ୍ପଧନ୍ୱା ନନ୍ଦନୀ ଧବ । ଏବେ ମୁଁ କରୁଛି ପ୍ରସ୍ଥାନ ।
ନଭ୍ୟକର୍ମି ସାଧି ଚଳ ନିଜଭୁବନ । ୨୭ । ଭ୍ରମରକୁ କହି କରି ସଦା-
ଶିବଙ୍କୁ ଯୁହାରି ଉଡଲା ଗଗନଗ୍ୱସ୍ୱ ନୀଡକୁ ଖଣ୍ଡି । ପ୍ରବେଶ ହେଲ ବଙ୍ଗ

କଣ୍ଟକେ ହୋଇ ସାରଙ୍ଗ ରହିଲା ସ୍ବୃରୁ ତରଙ୍ଗବତୀ ସରସୀ । ସଲ-
କ୍ଷଣ କମଳଜପଦ । ମଧୁରେ ଲୁବ୍ଧ ଲୋକନାଥ ମିଳନ୍ଦ । ୨୮ ।

---

## ଷଷ୍ଠଛାନ୍ଦ । ରାଗ ଢାଳ ।

ବିଯୋଗୀ କାଳ ବସନ୍ତ କାଳ ହୋଇଲା ପରବେଶ । ହେଲେ ପୁନ୍ନାଗ
ମାଧବୀ ନାଗକେଶର ସୁବିକାଶ । ୧ । କେତକୀ ଗନ୍ଧ ଘେନିଣ ଗନ୍ଧବହ
ବହିଲା ମନ୍ଦେ । ନବଅଗ୍ରମ ହୋଇଲା ଗ୍ରମ ନାନା କୁସୁମବୃନ୍ଦେ । ୨ । ଚୂତ-
ମୁକୁଳ ଦଶିକେ କୁଳବତୀ ଲଭିଲେ କ୍ଲେଶ । ନବ ବକୁଳ କଲେ ଆକୁଳ
ବିଦେଶବାସୀକୁଳ । ୩ । ବିଯୋଗୀ ଶୋକବତୀ ଅଶୋକ ପୁଷ୍ପ ପଲ୍ଲବେ
ଦୃଶୁ । ଶୁଣି ପଲାଶ ମଦନବାଣ ଶରେ ଉଡଲା ତରୁ । ୪ । ପିକଭା-
ରତୀ ଶୁଣି ଭାରତୀଆଦ ସନ୍ନ୍ୟାସୀମାନେ । କଲେକ ରତ ବିଷୟେ ରତ
ବଶ ହୋଇ ମଦନେ । ୫ । ବୋଲନ୍ତି ଭବ ସବୁ ବଭବ ସ୍ମରତେ ଅଛୁ
ପୂର । ଚତୁର୍ଥାଶ୍ରମ କେବଳ ଶ୍ରମ ପାଇବା ପାଇ କର । ୬ । ଦେଖି
ମାଧବୀ ପୁଷ୍ପ ସାଧବୀ ରସିକ ପ୍ରିୟବନ୍ଧୁ । ବୋଇଲେ ଆସି ହୋଇଲା ଅଗ୍ନି-
ବିଷ ସମାନ ମଧୁ । ୭ । ଏତେ ବସନ୍ତର ଏଯା ଧନ୍ଦର ଶୁଣିଣ ଅଭିମାନ ।
ହୋଇ ଏକାନ୍ତ ଲେଖିଲେ କାନ୍ତ ପାଶକୁ ଲେଖାମାନ । ୮ । ଚନ୍ଦ୍ରକି-
ରଣ କଳ୍ପ କ ରଣରଣକ ଉଦ୍ଦୀପନା । ଭ୍ରମର ରବ ଶୁଣି ଗରବ ଚେଳି-
ଲେ ବରାଙ୍ଗନା । ୯ । ଜଣୀ ଦିବସ ସମସ୍ତେ ବଶ ହୋଇଲେ ସ୍ମରତରେ ।
ସୃଷ୍ଟି ସରସୀରୁହରେ ରସି ରହିଲେ ମଧୁକରେ । ୧୦ । ଚତୁଃସ୍ରୋତ ମାନ-
ଦତପ ଖଣ୍ଡ ଉର କାମକୁ । ସ୍ବଛପାଶେ ବାନ୍ଧିଣ ପାଶେ ରଖିଲେ
ନାୟିକାକୁ । ୧୧ । କାଣି ନାଗର ସୁଖସାଗର କୁସୁମଶରବଶୁଁ । କ୍ଷଣେ
ଅନ୍ତର ନୋହିଲେ ତରଳାୟିତନେତ୍ରୀ ପାଶୁଁ । ୧୨ । ପ୍ରବାସୀ ମନ-
ମୃଗ ବନ୍ଧନ ହୋଇ ମଦନଶରେ । ପଶିଲା ବାମା ଉରଜ ବାମାଚଳେ
ଅଭ୍ରମ୍ଭରେ । ୧୩ । ନବମାଳିକା ନବମାଳିକା ଦେଇ ଦୂତୀହସ୍ତରେ ।

ହଳେ ଯୋଷିତ ପଶି ପ୍ରେଷିତ ହୋଇ ଅଯୁତ ମାରେ ।୧୪। ଚମ୍ପା ସୁ-
ମନା ଦେଖି ବିମନା ହୋଇ ଯୋଗୀନ୍ଦ୍ର ଭୂଲ । ହେଲେ ଶରଣ ଭୟ ବା-
ରଣ ବନିତା ବାନ୍ଧୁଛିଲ । ୧୫ । ଜଗତମୁଦଦାତା କୁମୁଦବାନ୍ଧବ ପର-
କାଶ । କଳଙ୍କ ଅଙ୍କ କାମିନୀ ଅଙ୍କ କରନ୍ତର ଯଶ ।୧୬। ଚକୋର
ଚନ୍ଦ୍ରା ଭୃଙ୍ଗଙ୍କୁ ଚନ୍ଦ୍ରା ମିଶ୍ରସନ୍ଧ୍ୟାପଦ୍ମର । ପଦ୍ମ ବରଷ ହେଲା ହରଷ ହୋ-
ଇଲା କୁମୁଦର ।୧୭। ଲଭିଲେ ଶିବା ଥାଇଣ ଶିବ ଙ୍କର ବିଚ୍ଛେଦ
ଦୁଃଖ । ନ ଦେଖି ରାଜ ମରାଳଗଣେ ସମାନ ଶୁଭ୍ରପକ୍ଷ ।୧୮। କେଉଁ
ବିଯୋଗୀ ଦେଖିଣ ଯୋଗୀଶ୍ୱରବିରିମଣ୍ଡନ । କଲା କମଳ ଦିଶି କମଳ-
ଚନ୍ଦ୍ରେ ବେଗେ ଶଯ୍ୟକ ।୧୯। କେଉଁ ନାୟିକ ପୁଷ୍ପସାୟକ ଶରେ
ଦୁଃଖିତ ହୋଇ । ବୋଲଇ ବହି ଏ ଦଣ୍ଡ ବହୁଥିଲୁ ମୋହର ପାଇଁ ।
।୨୦। ନୃପକୁମାରୀ ସେ ସୁକୁମାରୀ କୁମାରୀ ମାର ବଶ । ପାଇବୁ
ମାର ତାକୁ ନ ମାର ପାରିଲେ ମୋତେ ନାଶ ।୨୧।
ବୃକ୍ଷ ଅଙ୍ଗ ବୋଲେ ଅନଙ୍ଗ ଏତେ କି ମୃତମତ । ଯେଣୁ ଅବଧ
ତାହାଙ୍କୁ ବଧ କରୁଛୁ ଦେଖେତ ।୨୨। ହେ ଫୁଲଶର ସେ ପୁଷ୍ପାସର-
ରୁହନ୍ତି ଯୁବା ଥିଲେ । ଶିବ ତୋଷିବ କୋହଲେ ଜୀବ କିପାଁ ରଖିବ
ଭୂଲେ ।୨୩। ପୁଣି ସରସୀ ଦେଖିଲା ରସିକଚୂଡ଼ା ଶଶୀମୁଖ । ଦେଖିଣ
ହଂସ ବୋଲଇ ହଂସ ବସି ମୋ ଦୁଃଖ ଦେଖ ।୨୪। ଅହେ ସାରସ ଏବେ
ସାରସମୁଖୀ କଲା ଅଗତ । କର ମରଣ ନୋହିଲେ ରଣରଣକ ଦେବ
ଶାନ୍ତି ।୨୫। ପିକବଚନା ମୀନଲୋଚନା କାମକଷ୍ଟମୋଚନା । ଶଶୀବ-
ଦନା ରୁଚିରଦନା ପାଇ ବର ବେଦନା ।୨୬। ସଚନ୍ଦ୍ରାବତୀ ହୋଇ
ସୁମତୀ ବଦନ ବସୁମତୀ । କର ସେ ପତି ରତିରେ ରତି ମଦନରେ ଅରତି
।୨୭। ରଜନୀକର ରଜନୀକର ମଳୟଜ ପବନ । ରଜନୀକର ଜନନୀ
କର ମୁଖୀକି ଉଷ୍ଣକର ।୨୮। ଦୁକୂଳ ଲଗହାର ପନ୍ନଗ ମଣେ
ଜଗସ୍ତନୀ । ଜଗତତ୍ରାଣ ଅଶନ ପ୍ରାଣ ଥିବାର ମଣେ ହାନି ।୨୯।

ବିମ୍ବ ପ୍ରବାଳ ଶେଯେ ପ୍ରବାଳଅଧରଶ୍ରୀ ଧରି ଶୋଭି । ଶୁଦ୍ଧ ଧବଳ ହୋଇବ
ଧବଳକୁଣ୍ଡଳା ସଖୀ । ୩୦ । ମୃଦୁଳତର ଅଙ୍ଗେ ଶିଖରନଖର ଏହି
ମତ । ମୃଦୁ ସୁମନ ପରେ ସୁମନପତ୍ର ଅଗ୍ରୁଥ ଘାତ । ୩୧ । ଅରେ
ବିଷମଶର ବିଷମ ପଣହିଁ ସବୁଠାରୁ । ନିଜ ଉଚିତ ବର୍ଣ୍ଣରୀତିରୁ ମଧ୍ୟେ
ଘୋଟିବର ମାର ।୩୨। କେଉଁ ପ୍ରମାଦା ମଦନ ମଦାଳସେ ଅଚେତ ହୋଇ ।
ଛାଡ଼ି ସଙ୍କଟ ଉଡ଼ିଲେ କୁଚ ପଦ୍ମ ହୃଦରେ ଦେଇ । ୩୩ । (ବିରେଧ୍ୟା-
ଭାଷ) ହେଲେ ନଟୟୁ ବଟଯୀଟିଯୁ ଦିବାଶୟନ ମନା । ରଜନୀ ଦିନ
ଶୟନେ ଧାନ ହୋଇଲେ କୁଞ୍ଜାଙ୍ଗନା । ୩୪ । କେବଳ କାନ୍ତ ସ୍ମୃତିରେ
କାନ୍ତବରଣୀ ସଞ୍ଚାରଜା । କହିଇ ପତି ହୋଇ ବିପତ୍ତିଦାତା ହୋଇ-
ଲ ଏକା । ୩୫ । ଅତି ଉଦାରେ ଶୁକ କେଦାରେ ମତ୍ରେ ଗାୟନ କରେ ।
ସେ ବନପ୍ରିୟ ଦ୍ୱିଜ ଅପ୍ରିୟ ହୋଇଁଲେ ତପସରେ । ୩୬ । ହେ ଦକ୍ଷ-
କର ଅଦନ କର ଅଚନ୍ଦ୍ର ଚଣ୍ଡକର । ଅଜ୍ଞାନ ତମ ଅଜ୍ଞାନ ତମ ସ୍ରାବିତ
କ୍ଷୟ କର । ୩୭ । ସହସ୍ରଶିର ଧାରଣ କର ପାଦ ନୟନ କର୍ଣ୍ଣ ।
କଳାଣ ଲୋକଲୋଚର ଲୋକନାଥ ଦୂରିତ ମାନ । ୩୮ ।

---

## ଷଷ୍ଠମ ଛାନ୍ଦ । ରାଗ ଆହାରୀ ।

ଏମନ୍ତ ଋତୁରେ କନ୍ୟା କଷ୍ଟତରେ ଦୁଃଖୀ ହୋଇ ନୃପନନ୍ଦନା ।
ସୁଧୀରଗମନା ଅଧୀରନୟନା ମଦନମୁକୁରବଦନା । ବାଳା ଯେ । କହିଇ
କୋମଳ କଣ୍ଠେ । ଅତ୍ୟନ୍ତ ଶୋଭନ ନବ ଉପବନ ଅସିବା ବହନ
ଦେଖିଣ । ୧ । ନୃପସୁତା ଗିର କର ଶିରପର ଶୀଘ୍ର ସହିତସ୍ୱଜନକର ।
ତେଜ ଯନ୍ତ୍ରସାର ଭ୍ରମର ପରକର କରେ କର ହେଲେ ବାହାର ।
କହନ୍ତି । ହେ ତବ ଭଙ୍ଗୀ ପରିହାସ । ସ୍ୱରେ ଦୁଃଖିତ ପରଭୃତ ସୁଗୀତ
ଚାୟନେ ହରନ୍ତି ମାନସ । ୨ । ପୂରିତ ପୀୟୂଷ ପୂର୍ଣ୍ଣକଳଣ କୁଚ

ମଦନମଦାଳସ । ଅନଙ୍ଗ ଶରାଙ୍ଗ ନିତମ୍ବ ଜମ୍ବରୁଧର ଦମ୍ଭରୁ ମଧ୍ୟ-
ଦେଶ । ଚରଣେ । ନନ୍ଦନ ପଲ୍ଲବ ଅବଲା । ଏଣୁ କର ମନ୍ଦ ଗମନେ
ମେଦିନୀ ମଣ୍ଡିଲେ ମିଳନକୁଳୁଙ୍ଗା । ୩ । ଏଣୁ ଉପବନ ପରସରେ
ବନଜୁହାକ୍ଷୀ ହେଲେ ପରବେଶ । ବୋଲେ ପଦ୍ମଲାକ୍ଷୀ ତାର ଦ୍ୱିତ୍ୟ-
ସଖୀମାନଙ୍କୁ ହାସଯୁକ୍ତ ଭାଷ ( ଶ୍ଳେଷ ) । ସଖିରେ । ଏ ବନ ଉତ୍ତମ
ହାମିନୀ । ରୁଚିର ହୋଇଛୁ ତମାଳପତ୍ରରେ ପ୍ରଫୁଲ୍ଲ ପୁଂନାଗକୁ ଘେନ ।୪।

ଦେଖ ରେ ସୁନ୍ଦର ଏ ଯେ ନୀଳଗିରି ଦେବ ଦାରୁବ୍ରହ୍ମ ପ୍ରକାଶ । ପାରି-
ଜାତକରେ ଶୋଭା ପାଉଅଛୁ ଅମରନଗର ସଦୃଶ । ସଖି ରେ ।
ସୁକେଶରେ ଶୋଭା ଭ୍ରମର । ଯାତାଳ ପର୍ଯ୍ୟନ୍ତେ ପ୍ରତେ ହେଉଅଛୁ
ନାଗେଶ୍ୱରକୁଳେ ରୁଚିର । ୫ । ଶୁଣ ରେ ସୁମଧ୍ୟା ଏହାବେ ଅଯୋଧ୍ୟା
ନଗରୀ ରାମନକେତନ । ସଜ୍ଜନ ପର୍ଯ୍ୟନ୍ତେ ପ୍ରତେ ହେଉଅଛୁ ଯେଣୁ ଏ
କରୁଣାସଦନ । ସଙ୍ଗାତ । ସର୍ବ୍ବ ଏ ସଜ୍ଜନ ବସନ୍ତ । ଭୂମ୍ଭମପର୍ଣ୍ଣୀରେ
ଶୋଭା ପାଇବାରୁ ହେଉଛୁ ମଦନ ପ୍ରତୀତ । ୬ । ବପଣି ପର୍ଯ୍ୟନ୍ତେ
ହେମପୁଷ୍ପରାଗ ପ୍ରବାଳେ ଅତ ମନୋହରମ । ମୁନିବଦମ୍ବରେ ଶୋଭା ପା-
ବାରୁ ସାକ୍ଷାତ ବଦରକାଶ୍ରମ । ସଙ୍ଗାତ । କୁଣ୍ଡଲତାଫଳ ଆକାର ।
ରଙ୍ଗନୀପର୍ଯ୍ୟନ୍ତେ ପ୍ରତେ ହେଉଅଛୁ ଯେଣୁ ଦ୍ୱିଜରାଜେ ରୁଚିର ।୭।
ଏତେ ବୋଲି କର ଗଲେ ମତ୍ତକରୀଗମନୀ ଅଗ୍ରମନଥିକୁ । ପ୍ରଥମେ-
ଅଣିବେ ନୟନପଥକୁ ନବ ରସାଳମୂଳକୁ । କହନ୍ତି । ସଖି ଏ
ମଦନଭୂଣିର । କୋହଲେ କର୍ପାଇ ହେଉଛୁ କୁଟିଳ ପ୍ରଖର ଶିଳୀମୁଖ-
ପୁର । ୮ । ଦେଖ ଏ କଦମ୍ବ ବରହକଦମ୍ବ ଦମ୍ଭ ନାଶନେ ଶମ୍ବର ।
କରଛୁ ପ୍ରଫୁଲ୍ଲ . ଶୁଣ ରେ ପ୍ରଫୁଲ୍ଲପଦ୍ମବଦନା ସୁକୁମାରୀ । ସଙ୍ଗାତ ।
ଏ ପୁଷ୍ପଶାୟକ ମାଦକ । ହଳପ୍ରିୟକାମେ ବଖ୍ୟାତ ହୋଇଛୁ
ନୟନରଙ୍ଗବଧାୟକ । ୯ । ଦେଖ ରେ ସଙ୍ଗାତ ଏ କାମବରତ
ଯାତକୀ କେତକୀ ପୁଷ୍ପକୁ । ଏହାଙ୍କ ବର୍ଣ୍ଣ ସ ଉପୁଜାଇ ନାଶ କଳ

ପରିମଳ ପୈଶାବଳକୁଳ ମଣ୍ଡିତା ସବେ ମନୋହାରୀ ।୧୭। ଦେଖ
ଏ ଡାଳିମ୍ବ ଫଳକୁ ନିତମ୍ବବତୀ କମ୍ପାଧରୀ କନ୍ୟା । ଗଣିକା ଉନ୍ନତ
ପ୍ରାପ୍ତେ ଶତଧ୍ୱଙ୍କ କରିଜ କ୍ଷତରେ ମଣ୍ଡିତା । କୃଶାଙ୍ଗୀ । ସିଦ୍ଧମଣ୍ଡଳ
ଅଳଙ୍କାର । ଦେଖ ପକ୍ୱଳାକ୍ଷା ପରଶତି ଦ୍ରାକ୍ଷା ତୋ ବାଣୀ ଅଧ୍ୟକ୍ଷ
ରୁଚିର । ଏ ଯେ ବୀଜପୂର ବଟପୀ ତ୍ରିପୁରମୋହନ ଏ ସୁରଙ୍ଗସୁକା ।
ଫଳିକୁଚରେ ବନ୍ଧୁରଗୀ- ବଦତ ସଙ୍କଣ୍ଣକ ତନୁ ନାୟିକା । ଏ ତିଷ୍ଠ ।
ଗୋପ ନାଗରୀ ନାଉଦେଲ । ହୃଦୟରେ ରସ ଲୁ ଗୃହ ପ୍ରକାଶ ବାହାରେ
କର୍କଶପଟଳ ।୧୯। କେବଣ ଯୋଷିତ ପବନେ ଚଳତ ଶ୍ରୀଫଳ
ଦେଖି ବୋଲେ ମିତ । ତୋର କୁଚଶିଖ ଲଭିବା ଲୋଭରେ ଏହି
ହେଉଛି ପ୍ରଦୋଳତ । ଏହାର । ଅତ୍ର ବନ୍ଧୁତ ଗୁଣମାନ । ସୁବର୍ଣ୍ଣ
ସୁବାସେ ମଣ୍ଡନ ମଧୁରେ ମୁନିଜନ ମନ ରଞ୍ଜନ ।୨୦। ଏ ପକ୍ୱ ପନସ
ଦେଖରେ ମାନସ-ମୋହନ ନବ ଅଉସାରି । ନୀଳ ଦୁକୂଳରେ
ସୁବର୍ଣ୍ଣ ହୃଦୟ ଅଛାଦନ୍ତି ନବନାଗରୀ । କେବଳ । ପ୍ରକାଶ କଣ୍ଟକ
ପ୍ରକାର । ପଞ୍ଚଶର ଶର ସରସ ଅନ୍ତରଗତେ ହୋଇଛି
ଜରଜର ।୨୧। ଦେଖ ସଖି ରମ୍ଭାଜର ବୃକ୍ଷରୁ ରମ୍ଭା ଫଳ ଏ
ତପସ୍ୱୀ ସଦୃଶ । ପରଶତ ଫଳେ ତୋଷ କଲା ହେଲେ ମହର୍ଷିତୟ
ମାନସ । ଏମନ୍ତ । ବୋଲି ବୋଲି ହୋଇ ସଙ୍କଳେ । ଅତି
ମନୋରମ ସୁଗନ୍ଧ କୁସୁମ ତୋଳନ୍ତି ବାମା କୁତୂହଳେ ।୨୨।
ଅତି ମନୋରମ ପଲ୍ଲବ କୁସୁମ ଅଶୋକ ତରୁର ମୂଳରେ । ନୃପତି-
କୁମାରୀ ଅନୁରାଗ କରି ବଶ୍ୟମନ୍ତ୍ରେ ତହିଁ କ୍ଷଣରେ । ବୋଇଲେ । ପରି-
ହାସୀ ଏକ ଅଙ୍ଗନା । ବହିରେ ବିନା ଅଶୋକକୁ ଭଜନ୍ତି ଧନ୍ୟ ଧନ୍ୟ
ନୃପନନ୍ଦନା ।୨୩। କେବଣ ତ୍ରୈଲୋକ୍ୟମୋହନ ବର୍ଦ୍ଧକ ସୁମନସକୁ
ତୋଳୁଥିଲି । କେତେ ଦୂରେ ତାର ନୟନ ଅନ୍ତରେ ପ୍ରଫୁଲ୍ଲ ପୁନ୍ନାଗେ
ପଡ଼ିଲା । ତହିଁ ବ । ଚଳନ୍ତେ ସଖୀଏ ତାହାକୁ । ବୋଇଲେ ପୁନ୍ନା-
ଗେ ଅନୁରାଗ କରି ଶୁଭରୁ କ ବନ୍ଧୁଜୀବକୁ ।୨୪। ତାର ପରିହାସ

ଶୁଣି ସେ ପୀୟୂଷ-ହାସୀ ବୋଇଲା ତାକୁ ବାଣୀ । କାମିନୀ ମଧ୍ୟରେ ଯୁବା-
କଦମ୍ବରେ ତୁମ୍ଭ ସମ ନାହିଁ ରଙ୍ଗିଣୀ । କରକରକୁ ଯେବେ ତୋଳୁ କେଉଁ
କାମିନୀ । ବୋଇଲା ତାହାଙ୍କୁ କର ଖାର ପ୍ରୀତି ମିଳଣି କେବଣ ସଜନୀ । ୨୫
ଏକ ରସବତୀ ଯୁବତୀ ସେବତୀ ତୋଳନ୍ତେ ପଲ୍ଲବ ପାଣିକୁ । କେବଣ
ତରୁଣୀ ହେତୁ ଗର୍ବ କର ବୋଇଲା ଏମନ୍ତ ତାହାଙ୍କୁ । ସଖି ରେ ।
ଯୁବତୀ ସ୍ପୃଶ ସୁମନାକୁ । ନବ ଏଣୀଦୃଷ୍ଟି କମ୍ପ ପ୍ରୀତି କଲୁ ସଙ୍ଗୀ ପଳାଶ
କୁସୁମକୁ ॥ ୨୬ ॥ ଏକ ସଜନୀ ବଶହସ୍ତାତ ତୋଳୁଁ ଅଶୋକ କରନ୍ତେ
ନୟନ । କେଉଁ ସହଚରୀ ପରିହାସ କରି ବୋଇଲା ତାହାକୁ ଏସନ ।
ସଖି ରେ । ତୁ ଅଟୁ ଧଇର୍ଯ୍ୟସଦନା । ବଶହଦାଢ଼ରେ ପଡ଼ିଲା ଉତ୍ତ-
ରେ ଯାହା ଅଶୋକଯୁତମନା ॥ ୨୭ ॥ ନୃପତିଦୁଲାଳୀ ଦେଖ ନବ
ଅଳି ସହିତେ ଚମ୍ପାକଳିକାକୁ । ବିଷମବିଶିଖ ବିଶାଳ ବିଷରେ ଅଛି
ଚମ୍ପାକଳୀ ବାଣକୁ । କନ୍ଦର୍ପ । ନ ଗୃହି ତରୁଣୀ ଗୃହିଲା । ମାଏଁବେ
ଦହଇ ବିଯୋଗିନୀ ଗାଏଁ ପର୍ଯ୍ୟନ୍ତେ ମନକୁ ଅଇଲା ॥ ୨୮ ॥ ଏକ ସଜନୀ
ମଲ୍ଲିକା କୁସୁମକୁ ତୋଳିବାକୁ କଲା ଗମନ । କେଉଁ ସହଚରୀ ପରିହାସ
କରି ବୋଇଲା ତାହାକୁ ଏସନ । ସଖି ରେ । ତୁ ତାକୁ ରଙ୍କୁଛୁ କେସନ ।
ମଲ୍ଲି ବୋଲି ଯାର ଅବଲୋକନରେ ବୋଲନ୍ତି ତ୍ରିଭୁବନ ଜନ ॥ ୨୯ ॥
ଏଥୁ ଅନନ୍ତରେ କାନ୍ତିଭୂଷଣରେ ସଜନୀନଙ୍କର ହରଷେ । ସକଳ
ରଜନୀରମଣବଦନୀ ମିଳିଲେ ପଦ୍ମାକର ପାଶେ । ବାଳାକୁ । କହନ୍ତି
ସଖୀ ମଞ୍ଜୁଗିର । କମ୍ବୁ କର ପ୍ରାୟେ ପ୍ରତେ ହେଉଅଛି ଚକ୍ର ସାରଙ୍ଗ
ପଦ୍ମଧର ॥ ୩୦ ॥ ସ୍ୱର୍ଣ୍ଣାକର ପ୍ରାୟେ ପ୍ରତେ ହେଉଅଛି ଯେଣୁ ଏ ଅମୃତ
ଆଧାର । ଗଗନ ପର୍ଯ୍ୟନ୍ତେ ପ୍ରତେ ହେଉଅଛି ବହନ୍ତ ଉଡୁପ ସଞ୍ଚାର ।
ହେ ସଖି । ନୃପନନ୍ଦନୀ ନବବାଳେ । ସାବିତ୍ରୀ ପର୍ଯ୍ୟନ୍ତେ ପ୍ରତେ ହେଉଅଛି
କମଳଜକୁ ଧରି କୋଳେ । ୩୧ । ତୁ ବନଧାରଣ ସବାଶରୁ ଶୋଭା
ପାଉଛି ଏ ବିମ୍ବ ପର୍ଯ୍ୟନ୍ତେ । ହଂସ ଗତାଗତ ହୋଇବା ସକାଶୁଁ ସାକ୍ଷାତ

ବସ୍ତୁ ପଦ କ ଏ । ହେ ସଖି । ଅମୃତକାଣ୍ଡ ଏ ଶୋଭାଙ୍କ । ଭାଲକଣ୍ଠ କୋଳେ ଧର ଦଶୁଅଛ ଗିରରାଜସୁତା ପ୍ରାପ୍ତେକ । ୭୨ । ବସନ୍ତ ସମୟ ପ୍ରାପ୍ତେ ଦଶୁଛ ଯେଣ ଏ କୁସୁମ ଅବର । ଅଦ୍ଭୁତ ଅଙ୍କେ ଘେନ ଦଶୁଅଛ ଯେମନ୍ତ ବ୍ରହ୍ମାଣ୍ଡଉଦର । ବାଲା ରେ । ଜାଗଗ୍ରା ଛନରସଧ.ଗ୍ରା । ଭୂତଗଣସ୍ପର୍ଶଦାଯୁକ୍ତ ନ୍ୟାଯୁଗୁ ସାକ୍ଷାତ କିଂଶୁର- ଅଇସ । ୭୩ । ବେଣ୍ୟାର ପଗପ୍ରେ ପ୍ରତେ ହେଉଅଛ ଜରତେ ଛନ ରଧକାଙ୍ଗ୍ରୀ । ପୟୋଧାରଣୀ କାଉଣୀରୁ ସୁରଗ୍ରା ପରପ୍ରେ ପର ଉପକାଗ୍ରା । ସଖି ରେ । ଛଲଧର ଏ ଧୃତରସ । ସର୍ବତୋମୁଖ ସକାଶରୁ ଦଶୁଛ ସର୍ବବ୍ୟାପୀ ବସ୍ତୁ ସଦୃଶ । ୭୪ । ଏତେ ବୋଲି ରସେ ପଶିଲେ ହରଷେ ରସେ ରସବତୀନକର । କରନ୍ତ ବାଲା ବହୁଧ ଲୀଳା ଲୀଳାବତୀ ବମ୍ବାଧରୀ ସଙ୍ଗର । ଉତ୍ତୁପ । ମୁଖୀ ଉଡୁପ ପ୍ରାପ୍ତେ ହୋଇ । ଜବର୍ଣ୍ଣ- ଲହରୀ ବାହୁରେ ଲହରୀ ଭାଙ୍ଗନ୍ତ ପ୍ଳବମାନ ଦେଇ । ୭୫ । ଲହରୀ ବଳ ଲଭଣ କଣ୍ଠକୂଳ ବୁଡଲେ ସେ ଯାହା ମନରେ । ମଣୁଛୁ ଏସନ ବେଖି ଘା ବଦନ ବୁଡଲେ କ ନୀଳଜଳରେ । ସୁମନ । ଭଙ୍ଗିରେ ଚଞ୍ଚଳ ସାରସ । ନାଚୁଛ ବ ବେଖି ବଇଗ୍ରା ନୀଳେନ୍ଦୀବରଦରଦାସ୍ପୀ ସଦୃଶ ।୭୬ କାମିନୀଚକ୍ର ଖଞ୍ଜନ ଚକ୍ର ଦେଖି ଯାହା ବକ୍ର କର ଚାହିଁଲେ । ଅମ୍ବୁ ସ୍ତନ ସ୍ଥଳୁ ସ୍ୱରୂପଗମନ ମାନସେ ଧର ଭ ବୋଇଲେ । ଫେଣ ସେ । ତଟପ୍ରାପ୍ତେ ହୋଇ ରହିଲେ । ଖଞ୍ଜନବନ ତଟ ଯେବେ ରଞ୍ଜିବ ନେବଇ କହାର ବୋଇଲେ । ୭୭ । ଲହରୀ ଘୋଷ ଏମନ୍ତ ଘୋଷୁଛି ବ ଅଗୋ ସଲୁନ୍ତଳାସମୂହେ । ରଙ୍ଗ ଲୋକଙ୍କୁ ଭାଙ୍ଗୁଛ କାହିଁପାଇଁ ବୁଡିଇ କୁନ୍ତଳସମୂହେ । ବୋଇଲ୍ୟ । ଲୁମ ଦେଖି ଏକ ନାଗରୀ । ସଖୀ ଜାଉ ଶୋଭା ଇଉବା ଲେଲୁବର କ ଜୁମ ଲେ ଲୁମି ପାମର ।୭୮ ଯେତେବେଳେ ନାରୀ ବାହାରଲେ ବାରମଧ୍ୟରୁ ଶୀତଳତାପରେ । ଅତ୍ୟନ୍ତ ସୁନ୍ଦିନବସନ୍ଦ୍ର ଜୀବନ ସ୍ରବନ୍ତ ସେ ଯାହା ଦୋବରେ ।

ସନ୍ଧ୍ୟାନ୍ତ । ଶୋକଭରରେ ସେହୁ ବସନ । ଏହିକ୍ଷଣି ଏହା ସଙ୍ଗ ଭାଙ୍ଗି ଯିବ ବୋଲିକ ଛଡ଼ୁଛୁ ଜୀବନ । ୭୯ । ଏ ଅନ୍ତେ ସୁବାସ ପିନ୍ଧିଲେ ସୁବାସ-ସୁମନ-ପରିମଳ-ତନୁ । ଏହି ଭାଳେ ବାଲାଗୁଣାଧସ୍ତ ବାଲାବଳୟ ଚାପ ଶୀଘ୍ରନ୍ତୁ । ହୋଇଲା । ଚମତ୍କୃତ ଯଥା ପଙ୍କଜ । ଅଟକ୍ଷ ଲୋଚନା-ନାଥଙ୍କୁ ରକ୍ଷା କର ଅରକ୍ଷରକ୍ଷ ଭବାନ୍ତକ । ୮୦ ॥

---

## ଅଷ୍ଟମ ଛାନ୍ଦ ।

ରାଗ କଲଣିଗୌଡ଼ା—ମୃକବର ବାଣୀ ।

ଅତ ଗୁପତ କାବ୍ୟ । ଏତ କରପତଦ୍ୟତ । ନ ଦେଖିଲେ ଏକା କଥ । କହି ନ ପାର ଯେ । ୧ । ଏମନ୍ତ ବଗ୍ୱର ତଟେ । ହଂସ ଉଡ଼ଲା ଭୁଲଟେ । ବସିଲା ଅଳପ ଦୂରେ । ଛିତି ଉପରେ ଯେ । ୨ । ତା ଦେଖି ନୃପକୁମାରୀ । ଗୋଡ଼ାଇଲ୍ଲେ ଅନୁସରି । କର ନଷେଧକୁ ସଖୀ । କହିଲେ ଲକ୍ଷି ଯେ । ୩ । ପଳାଇଛୁ ପକ୍ଷିପତି । ଗୋଡ଼ାଇଲୁ ଗଜଗତି । କବା ଗତି ଶ୍ରେଷ୍ଠ କର । ପଳାଇ ଉର ବ । ୪ । ହଂସ-ପୁଚ୍ଛ ବାମା ଧର । ମୃଣାଳସୂତ୍ର ଅନ୍ତର । ଏରୂପେ କେତେ ଦୂରକୁ । କେଲା ରମାକୁ ଯେ । ୫ । ସଖୀଙ୍କ ଲୋଚନାନ୍ତକୁ । ଅନ୍ତର ହୁଅନ୍ତେ ଚାରୁ । ଦୃଷ୍ଟି ରଖି ବାମାତୋଳେ । ବସିଲା ତାଳେ ଯେ । ୬ । ବୃକ୍ଷ ପରେ ଦେଖି ତାକୁ । କନେ କୁଚ କତମ୍ବକୁ । ଭୃମୂର ହେତୁ ବଳମ୍ବ । ଗଲା ଭାବମ୍ବ ଯେ । ୭ । ହୋଇ କ୍ଷଣକେ ମଉନ । ବୋଲେ ପକ୍ଷୀ-ଜନ୍ମ ଧନ୍ୟ । ଜାଣି ତା ଦୁଃଖମାନସ । କହଇ ହଂସ ଯେ । ୮ । ଏ ଚୋର ବାଲା ବସ୍ତୁର । ସାହସତ ଅମାନୁଷ । ଧଇବୁ ମାନଚବାଣୀ । ପକ୍ଷୀ ସୁଚେଣି ଯେ । ୯ । ତୁ ପୁଣି ଅଚ୍ଛ କେମନ୍ତ । ଅତ ଚଞ୍ଚଳ ଦୃଗନ୍ତ । ଘନଜଘନା ଜଣୋଣ । ନୃପକୁମାରୀ ଗୋ । ୧୦ । ଚରଣ ପଲ୍ଲବଧାର । ଦୁର୍ବହ ଉରଜଭାର । ନତମ୍ବ ଅତ୍ୟନ୍ତ ଗରୁ । ମଧ ଛୋ

ସରୁ ଗୋ । ୧୧ । କେବଳ ତୋ ଏହି କଥା । ଦେଖି ମୋର ହେଲା
ବ୍ୟଥା । ତୁହିତ ରସିକାଙ୍ଗନା । ମୁଁ ପକ୍ଷୀ ହିନା ଗୋ । ୧୨ । ପୁଂସ୍ତେ
ଧର କାମକଳା । କି କର ସହିବୁ ବାଳା । ଦୁଃସହ ମଦନଶର । ମୃଦୁ
ଶରୀର ତୋ । ୧୩ । ଏହା ସହିତେ ଜନେ । ନ ଜାଣନ୍ତି ଅଳ୍ପମାନେ ।
ସବୁ ଅନୁଭବ କଥା । ମଦନବ୍ୟଥା ଗୋ । ୧୪ । ଏଥିକି ଯେ ପ୍ରତୀ-
କାର । ନ କରନ୍ତି ପିତା ତୋର । ନ କହନ୍ତି କି ଜନନୀ । ତୋ ଦୁଃଖ
ଘେନି ଗୋ । ୧୫ । ପୁଣି ବୋଲେ ପ୍ରାଣସଖି । ମଦନମୁକୁରମୁଖି ।
ତୁମ୍ଭ ସମ ଜଣେ କାହିଁ । ଦେଖି ମୁଁ ନାହିଁ ଯେ । ୧୬ । ଯାହା ତୁ ଏ
ମଧୁକାଳେ । ନ ବସି ନାହର କୋଳେ । ନେଉଛୁ ରଜନୀ ଦିନ ।
ଯେତ ଗହନ ଏ । ୧୭ । ଦେଖି ତୋ ଏହା ଉପାୟେ । ମୋତେ
ଲାଗେ ମହା ଭୟେ । କି ମନ୍ତ୍ର ଜାଣୁ ଚତୁରୀ । କହ ବିସ୍ତାରି ଗୋ ॥
ତୁ ବା ବୋଲିବୁ ଏମନ୍ତ । ମୋର ନ ଥିବାର କାନ୍ତ । ଜାଣିଲୁ
କେମନ୍ତ କରି । ଶୁଣ ଚତୁରୀ ଗୋ । ୧୯ । ଯେବେ ଥାନ୍ତା ତୋର
ପତି । ଏକାଳେ ନବଯୁବତୀ । ଏକା କରି କୁନ୍ଦଦନ୍ତି । କପାଁ ଦେଖନ୍ତି
ଯେ । ୨୦ । ପତି ଥିଲେ ବିଦେଶରେ । ଚିଠିପତ୍ର ଆସନ୍ତା କରେ ।
ବୃନ୍ଦଥାନ୍ତୁ ଦଶଦଶେ । ସକଳ ଦିଶେ ଯେ । ୨୧ । କୁଣ୍ଠିତ ହଂସ-
ବାଣୀ । ଶୁଣିଣ ନୃପଦୁଲଣୀ । କିବା ଗୃଞ୍ଜ ପଣେ ମଣି । ପାଇଲା
ମଣି ସେ । ୨୨ । କେବଳ କମଳମୁଖୀ । ଭିନ୍ନ ଅନ୍ୟ ରୂପ ଦେଖି ।
ଦେଖିଲା ତାର ଚରଣ । ଅତି ବିଚିତ୍ର ଏ । ୨୩ । ଏକେତ ଯେତ
ଗରୁଡ଼ । ଦୁଯେ ସ୍ୱର୍ଣ୍ଣଘଟିତ । ସେ ପୁଣି କହୁଛି କଥା । ହୃଦୟ
ବ୍ୟଥା ଯେ । ୨୪ । ଦେଖିଲେ ଏମନ୍ତ ଖଗ । କୋହିବ କାହାର
ପ୍ରୀତ । ମାନବ ଦେହକୁ ଧରି । ଏତ ଚତୁର ଯେ । ୨୫ । ବିସ୍ମ-
ରିଲ ଏଣୀଦୃଶା । ଏହି ମୋ ଗଲା ଦୁର୍ଦ୍ଦିଶା । ଦୁଃଖମେ ଲଭେ ନାଶ ।
ହଂସ ପ୍ରକାଶ ଏ । ୨୬ । ଏମନ୍ତ ବଚନ ଶ୍ରମା । କନକଚମ୍ପକ-

ଶ୍ୟାମା । ହଂସକୁ ବିନୟ କରି । କହେ ଚତୁରୀ ଯେ । ୨୭ । ସୁନ୍ଦରୀ
ରସିକାଙ୍ଗନା । ହେଲା ଗତଯଉବନା । ଏଣୁ ତୁ ଜାଣ ସରସୀ । କଳୁ
ଷିତୃଣୀ ଯେ । ୨୮ । ତୋ ପରିବାସୀ ରୁଚି । ନ ଥିଲାର ପଡ଼ତ୍ରୃଷା ।
ପ୍ରବେଶମୁଖ ପ୍ରବେଶ । କନ୍ଦ ତୁ ହଂସ ଯେ । ୨୯ । ଅନୁଭବ ଜାଣି
ମୋର । ଯେଣୁ ହେଲୁ କେଶପର । ତେଣୁ ମୋ ସକଳ କାର୍ଯ୍ୟ ।
ହୋଇବ ଅଳ୍ପ ଏ । ୩୦ । ସାଧୁପିତୃ ଦକ୍ଷଣରେ । କଦା ନ ଲଭନ୍ତି
ଜନେ । ଦୂତ ପର ଉପକାରେ । ତୃପ୍ତ ସଂସାରେ ଯେ । ୩୧ ।
ତୋର ଚନ୍ଦ୍ରଶୋଭା ଦେଖି । ସଫଳ ହେଲା ମୋ ଆଖି । ଯେ ସୁଖ
ହେଉଛି ମୋର । ମନଗୋଚର ସେ । ୩୨ । ଯେ ଜାଣେ ଅନୁଭାବତା ।
ତାକୁ କି କହିବା ଚିନ୍ତା । ତୁମ୍ଭେ ମହତକୁ ବ୍ୟଥା । କହିବା ବୃଥା
ଯେ । ୩୩ । ପ୍ରାର୍ଥନା କରନ୍ତେ ଜନ । ଯେତେ ଥାଏ ଅଭିମାନ । ଯେନ
ଥଙ୍କେ ମହତକୁ । ଯାନ୍ତି ଦୂରକୁ ଯେ । ୩୪ । ହେବ ବା ନୋହିବ କାର୍ଯ୍ୟ ।
କହିବ ବଚନେ ଲଜ୍ଜ । ରଖିଥାଇ ଉଦବେଗେ । ତାହାର ସଙ୍ଗେ
ଯେ । ୩୫ । ଏଥି ଉତ୍ତରୁ ହେବାର । ହୋଇବଟି ପୁରସ୍କାର । ମହତ
ଜନମାନଙ୍କ । ଯେନ ମନକୁ ଯେ । ୩୬ । ମନେ ନ ଥିବାର କଥା । ଜାଣି
ଯେ ହୃଦୟ ବ୍ୟଥା । ସତ୍ୟରେ କରଇ ଦାନ । ମହତ ଜନ ଯେ । ୩୭ ।
ଏମନ୍ତେ ପୁଣ ଯୁବତୀ । ହଂସକୁ କରଇ ସ୍ତୁତି । ସକଳ ବଚନ ସାରେ ।
କଷ୍ଟ ବୃଦ୍ଧିରେ ଯେ । ୩୮ । ( ଶ୍ଳେଷ ) ଅର୍ଜୁନ ପକ୍ଷ ସୁନ୍ଦର । ଧୀର-
ଗତି ସୁଖକର । ହଂସ ମାନସବିହାରୀ । ବକ ବଇରୀ ଯେ । ୩୯ ।
କମଳଚନ୍ଦ୍ର ପଦ । ବଂଶନାଦ ବିଶାରଦ । ସାରସ ରଙ୍ଗ ଚରଣ ।
ଭିକ୍ଷାରଣ ଯେ । ୪୦ । ଶୁଣି ତା ବିନୟ ବାଣୀ । କଣି ହେଲା ପକ୍ଷି-
ମଣି । କହଇ କୋମଳ କର । ଶୁଣ ସୁନ୍ଦରୀ ଗୋ । ୪୧ । ତୋ ପିତା
ଅବଳା ଧବ । ତୋତେ ବସ ଅପରୂପ । କ ଦେଇ ତୋଷିବ ତୋତେ ।
ମିଳିବ ମୋତେ ଯେ । ୪୨ । କାହିଁ ତୋ ଶ୍ରବଣ ଦେଶ । କାହିଁ

ମୋ ବହୁଙ୍ଗ ଭାଷ । ଏ ସବେ ଶୁଣିମୁ ଯେବେ । କହୁବ ତେବେ
ଯେ ॥ ୪୩ ॥ ନିରର୍ଥକ ଶିଶୁବାଣୀ । ଯେମନ୍ତେ ପଣ୍ଡିତ ଶୁଣି । ଶ୍ରବ-
ଣେ ସ୍ନେହ ମନେ । ଏହୁ ତେସନେ ଯେ ॥ ୪୪ ॥ ତୁମ୍ଭେ ବ୍ରହ୍ମ-
ଲୋକବାସୀ । ମୁ କୁଳବତୀ ମାନୁଷୀ । ଯେଉଁ କଥାହୁଁ କହୁବ । ମୋ-
ତେ ଅପୂର୍ବ ସେ ॥ ୪୫ ॥ ଥିଲେ ମଧ୍ୟ ଖଣ୍ଡ କ୍ଷୀର । ଯେମନ୍ତେ ତ୍ରୁଟିତ୍
ନୀର । ବଡ଼ କରୁ ଘନରସ । ଯେନଇ ହଂସ ହେ ॥ ୪୬ ॥ ଶୁଣି ବାଲା
ନିବେଦନା । ଜାଣି ଅନନ୍ତରବେଦନା । କହୁଇ କୋମଳ ସ୍ୱର । ଶୁଣ
ସୁନ୍ଦରୀ ଗୋ ॥ ୪୭ ॥ ତୋର ଅନୁରୂପେ ପତି । ନିର୍ମାଣିଛୁ ପ୍ରଜାପତି ।
ରତ୍ନମାଳା ନରେଶ୍ୱର । ପ୍ରିୟ କୁମର ଯେ ॥ ୪୮ ॥ ଅବନୀତଳ
କାମ । ସକଳ ସୌନ୍ଦର୍ଯ୍ୟ ଧାମ । ବାରପଣେ ପଣ୍ଡୁଧିର । ଗୁଣ ମନ୍ଦିର
ସେ ॥ ୪୦ ॥ ଯେବେ ତାର ଶୋଭା ଲବ । କାମବାମା ନିରେଖିବ ।
ପ୍ରିୟ କର ଦେବ ଚୁମ୍ବ । ହାରଣ ଦମ୍ଭ ଯେ ॥ ୫୦ ॥ କୁଟିଳ କୁନ୍ତଳ-
ଶ୍ରେଣୀ । ଦେଖି ମିହିରଦୂଲଣୀ । ଜଳଧରେ ଦେଲ୍ଲ ଦୋଷ । ଦେଖ
ପ୍ରକାଶ ଯେ ॥ ୫୧ ॥ ଯେବେ ତାର ମୁଖଦ୍ୟୁତି । ନିରେଖିବ ରତି-
ପତି । କରିବ ମୁକୁରେ ତାର । ହୃତ ଆଦର ଯେ । ୫୨ । ଭ୍ରୂ ଅ-
ବଲୋକନରେ । ନ ଧରିବ ଧନୁ କରେ । କାମପାଶ ଭଙ୍ଗି ଦେଖି । ହୋ-
ଇବ ଦୁଃଖୀ ଯେ । ୫୩ । ପରଭୃତ ତାର ଭାଷ । ଶୁଣିଲେ ହୋଇବ
ଦାସ । ହାସ ଦେଖି ଉରମଣ । ହୋଇଛୁ କ୍ଷୀଣ ଯେ । ୫୪ । ନେତ୍ର
ଦେଖିଣ କମଳ । ପଶେ ଜଳ ପଦତଳ । ନାସା ଦେଖି ଶୁକ ଗଲ୍ଲ ।
ବନେ ପଶିଲ୍ଲ ଯେ । ୫୫ । ଦେଖି ତାର ଦନ୍ତପନ୍ତି । ମୋତି ଲଭ
ମହାଭ୍ରାନ୍ତି । କାମିନୀ କୁଚଗିରିରେ । ପଶିଲ୍ଲ ଡରେ ଯେ । ୫୬ ।
ମରକତସ୍ତମ୍ଭ ବାହୁ । ଅରି-ଚକ୍ର ନାଶେ ରାହୁ । ମୃଣାଳ ତାହା
ଦର୍ଶନେ । ପଶିଲ୍ଲ ବନେ ଯେ ॥ ୫୭ ॥ କଣ୍ଠ ଦେଖି କମ୍ବୁ ହରେ ।
ସକଳ ଦେବ ଗ୍ରାମୁରେ । କହୁଛୁ ଆରତ ସ୍ୱରେ । ନିଯୋଗି ହରେ ଯେ ॥

ବକ୍ଷ ଯେତେ ମନୋରମ । ହେବ ତା ଭୁଜ ଅଣ୍ଡମ । ହାର ଦେଖି ସୁର-
ବାଳୀ । ପଡ଼ିବେ ତଳ ଯେ । ୬୯ । ଯେବେ ତା ନିତମ୍ବ ହୁଏତ ।
ଦେଖିବେ ସୁରସୁବର୍ଗ । ନ ପାରିବେ ତନ୍ତୁଁ ପଶି । କେଇ ମୃଗାକ୍ଷୀ
ଯେ ।୭୦। ତାର ଜଙ୍ଘ ଦରଶନେ । ବଗ୍ରୁଚ୍ଛ ମୋର ମନେ । ବନିତା
ମାନସରୁ । ବନ୍ଧନସ୍ତମ୍ଭ ସେ । ୭୧ । ଦେଖି ତା ଚରଣତଳ । ଅମଳ
ସ୍ଥଳକମଳ । ଅତି ଅସ୍ତବ୍ୟସ୍ତ ହୋଇ । ଲୋଟନ୍ତି ମଜ୍ଜି ଯେ । ୭୨ ।
ପଦ୍ମର ନାଗସାମଣି । ମଣ୍ଡପନ୍ତି ତାକୁ ପୁଣି । ମହେଶ୍ୱର ଅଷ୍ଟମୂର୍ତ୍ତି ।
ଗୁଣ ସୁବଶ ଗୋ ।୭୩। ଧୀର ଗୁଣରେ ପୂଜିତା । ମଞ୍ଜୁଳ ଅନନ୍ଦିତା ।
ବସ୍ତ୍ରପ୍ରଦ ରସକୂପ । କ୍ଷିତିସ୍ୱରୂପ ସେ । ୭୪ । ଅମୃତ ଶୁଭ୍ରସ୍ୱରୂପ ।
ନିପାତିତ ମିଶତାପ । ରସଜୀବନ ସଜଳ । ଏଣୁ ସେ ଜଳ ଗୋ । ୭୫
ପ୍ରଭାକର ଦୀପ୍ତିଶିଖା । ପ୍ରେମମୂର୍ତ୍ତି ଦେବମୁଖ । ପାବକ ଅଣ୍ଡ୍ର ଦାନ ।
ତେଣୁ ଦହନ ସେ । ୭୬ । ମୂଳତତ୍ତ୍ୱ ବସ୍ତୁପ୍ରଦ । ନାଳଭୂତ ପରମାଦ ।
ଅଗୋଚର ଶବ୍ଦଗୁଣ । ଏଣୁ ଗଗନ ସେ । ୭୭ । ଜଗତ୍ପ୍ରାଣ ବନ୍ଧୁ-
ଗୁଣ । ଅସୁଖ ଶମସଦନ । ସୁଗନ୍ଧ ପ୍ରବାଳ କର । ଏଣୁ ସମୀର ସେ । ୭୮
ଦୃଢ଼ ବରୁଡ ଭୂଷଣ । ମହାଦେବ ଧୀରମନ । ସମସ୍ତ କର୍ମକୁଶଳ ।
ଯଜ୍ଞରୂପାଳ ସେ । ୭୯ । ପଦ୍ମନେତ୍ର ସୁଖକର । ଅରୁଣ କମଳ କର ।
ହଂସ ନିରୁପମ ଗତି । ରବିମୂର୍ତ୍ତି ସେ । ୮୦ । କମଳପଦେ ସୁନ୍ଦର ।
ତାରକା ସୁଖବିସ୍ତାର । କୃତଜଳ ପୂର୍ଣ୍ଣକାମ । ତେଣୁ ସେ ସୋମ ଯେ ।୮୧
ବ୍ରହ୍ମା ଯେଣୁ ଶ୍ରୁତିଧର । ଶିବ ଯେଣୁ ଶୂଳଧର । ଯେଣୁ ସେ ସୁମନାରଜା ।
ତେଣୁ ବଡ଼ୋଜ୍ଜା ଯେ । ମହୀଧର ମହାଶିଖ । ତେଣୁ ସେ ଗିରି ପ୍ରତ୍ୟକ୍ଷ ।
ଯେଣୁ ସେ ଭୁବନସାର । ତେଣୁ ବରୁଣ ଯେ । ୮୩ । ଦେଖି ତାର
ସ୍ତ୍ରୁଙ୍କର । ମଣିଲ ଲୁପ୍ତମହାର । ମୀନ ଅଧରେ ତହିଁତ । ଶ୍ରୀ ସୁଗ-
ଛାତି ସେ । ୮୪ । ତାଗୁଣ ଅଙ୍ଗବର୍ଣ୍ଣିନା । ଶୁଣିଣ ନୃପନନ୍ଦନା । ହୋଇଲା
ଚଞ୍ଚଳମନା । ଗତଚେତନା ଯେ । ସେନେହେ ସେନେହ ବଳା ପାଇଣ

କାମଅନଳ । ଦହନ୍ତେ ସ୍ତନ୍ୟ ତାର । ହୋଏ କାତର । ସେ ୭୬ ।
ମନଦୁଃଖ ଜାଣି ତାର । କହଇ କହୁଣବର । ନାଶିବେ ମହେଶକାନ୍ତା ।
ଏ ଘୋର ଚିନ୍ତା ଯେ । ୭୭ । ଷଡ଼ ଋ ଏବେ ଅଶ୍ଳୀଳ । କରୁଛନ୍ତି ମୁଁ
ଅନୁକୂଳ । ଅଳପ ଦିନେ ଚିନ୍ତା ଧର । ହେଠ ହୋଇବ ଯେ ୭୮ । ହାସ
ଦସ୍ତ ନେଇ ମୀନ । ସୁଧାପୂର୍ଣ୍ଣ କୁମ୍ଭ ସ୍ତନ । ସୁହର୍ଣ କଲ୍ୟ ଗମନ । ପକ୍ଷିସ୍ତ-
ଜନ ଯେ । ୭୯ । ଚକଳ୍ପ ପଛୁଁ ସାରଙ୍ଗ । ବାମାଙ୍କୁ ଦହେ ଅନଙ୍ଗ ।
ଅରଣ୍ୟରେ ଏ ଚରିତ । କରିବା ଖ୍ୟାତ ଯେ । ୮୦ । କମଳର କନ-
ନନ୍ଦ । ବ୍ରମାସ୍ତ କାମ ନିଦାନ । ଜାନକୀକାନ୍ତ ଚରଣ । ମୋର ଶରଣ
ଯେ । ୮୧ । ଇନ୍ଦୁ ଦୁର୍ଗା ହର ହର । ନୃପଇ ଏ ଅର୍ଥ ଶ୍ରେ ।
ଏଥୀ ମୂଳପଦ ସ୍ପୃଷ୍ଟ । ଅର୍ଥରେ ଯୁକ୍ତ ଯେ । ୮୨ ।

—o—

## ନବମ ଛାନ୍ଦ ।

ରାଗ ବୃତ୍ତ । ଅଷ୍ଟ ଚଣ୍ଡୁକ୍ରବାଣୀ ।

ଦୁଃସହ ବିରହବଶୁଁ ସୁନ୍ଦରୀ । କ୍ଷଣ୍ କ୍ଷଣ୍ କ୍ଷୀଣ କ୍ଷୀଣତର ଦଶା ।
ଉତ୍ତପ୍ତ ଶ୍ୱାସ ତନୁ ତାର । ଦଶ୍ଦିଲ୍ଲ ରଜତ ପାତ୍ର ରୂପର । ସେ
ସ୍ଥିତ ସ୍ଥଳଙ୍କ । ଶୟନ କଲା ବସୁମତୀ ଅଙ୍କ । ୧ । ସଜଳ କମଳଦଳ
ଶୟନେ । ସଘନସାର ଚନ୍ଦନ ଲେପନେ । ପଲ୍ଲବ ବ୍ୟଜନ ଶୀତପବନେ ।
ବହୁତ ପନିର ନୀର ସେଚନେ । ସେ କାମ ଅନଳ । ନୋହିଲା ଶାନ୍ତ
ବୃଦ୍ଧି ହେଲୁଁ ହେଲ । ୨ । ଚରିହାର ଦେଲେ ତାର ହୃଦରେ ।
ଚମକ ପଡ଼ଇ ଅହି ବୁଦ୍ଧିରେ । ଭୂଷଣ ମଣଇ ଭୂଷଣକୁଳ । ଅଚଳପ୍ରା-
ୟେ ମଣଇ ଦୁକୂଳ । ଦେଖି ଶଶଧର । ଅଗ୍ନେ କରଇ ଜଳଯନ୍ତ୍ର-
ପୂର । ୩ । କାର୍ଯ୍ୟ ପଶ୍ଚାତ୍ୟେ ମଣେଁ ଅବାସ । କୋକିଳ କଳ କୂଜନ
ସଦୃଶ । ମନ୍ଦମରୁତ୍କୁ ମଣେ ହୁତାଶ । ମାଧବ ପଦ ସୁମନ ଶ୍ୱସ ।
ଶୂନ୍ୟ ଦଶଦିଶ । ନିମିଷ ମଣୁଁ ଲକ୍ଷେ ବରଷ । ୪ । ଦୋଷ୍ଠନ୍ତେ ଦୁଃସହ

ବହନ୍ତ ବର୍ଣ୍ଣାସ୍ତ୍ର । ଚନ୍ଦ୍ରା କରଇ ଜ୍ଞାନ୍ତ ମହୌଷଧି । କରଇ ଚନ୍ଦ୍ରା ଖଡ଼-
ଗ ନିଶ୍ୱାସ । ବୋଲଇ ରଷ କମଳାବଳୀ । ଜାଣ କାମଦର । ଦ୍ରୌ-
ପଦୀ-ଲକ୍ଷ୍ମୀସିନ୍ଧୁ-କର୍ଣ୍ଣଧାର । ୫ । ଏମନ୍ତ ସ୍ତୁତି କରନ୍ତେ କାମିନୀ ।
ଶ୍ରବଣେ ଶୁଣିଲା କୋକିଳ ଧ୍ୱନି । ବୋଲଇ ତାକୁ ନ.ଗଶ୍ୱରତନ ।
କି ଦୋଷେ ମୋର ନେଉଛୁ ଜୀବନ । କହ କୁହୁକଣ୍ଠ । କାମ କି ପେ-
ଷିଛୁ କହ କପଟ । ୬ । ଅପାର କୁହୁ ରବମାନ ଘୋର । ଶ୍ରବଣେ
ବିସ୍ତାର ମଦନଜ୍ୱର । ବରଙ୍ଗ ପ୍ରାଣ ତୃଣ ବୈଶ୍ୱାନର । ମାନନୀ ମାନ
ବଡ଼ଶୀ କୁଠାର । ହେ ଦ୍ରୋଣକୁମର । ଅଦୋଷୀ ଜନ ବଅର୍ଥେ ନ
ମାର । ୭ । ସପକ୍ଷ ହୋଇ ହେଉଛୁ ବିପକ୍ଷ । ମଧୁମତ୍ତ ନବ ଅରୁଣ-
ଅକ୍ଷ । ଏହି ନ୍ୟାୟରୁ ଦ୍ୱିଜରାଜ ହୋଇ । ଗୁରୁ କାମିନୀ ନାଶେ ଲଜ୍ଜା
ନାହିଁ । ଦକ୍ଷାକରସୁତ । ଅକରୁଣ ତୋ ହେବା କି ଉଚିତ । ୮ ।
ପୁଣି ବୋଲଇ ହେ ଧୀର ଅନିଳ । ତୁମ୍ଭ ଜନମ ଶ୍ରୀଖଣ୍ଡ ଅଚଳ ।
ତୁମ୍ଭେ ଜଗତପ୍ରାଣ ନାମ ବହ । ଏବେ ଅଦୋଷେ ନ ଦହ ମୋଦେ-
ହ । ହେ ତ୍ରିଗୁଣଧର । ତେଣୁ ତୁ ହର ତୋତେ ନମସ୍କାର । ୯ । ସହି
ନ ପାରି ଶରୀର ତାହାର । କ୍ଷଣକେ ପୁଣ ବୋଲେ ଅନ୍ୟ ଗିର ।
ସ୍ମରଣକ୍ରାନ୍ତ ସ୍ୱେଦ ଯାହା । ବିନାଶେ ଯାଇ ହେଉଥାଉ ସାହା ।
ସେହି ଧର୍ମରୁ । ରକ୍ଷା ପାଉଛୁ କୁଣ୍ଡଳୀ ମୁଖରୁ । ୧୦ । ଯେବେ
ମୋତେ ତୁ କରୁ ନିରଣ । ସେ ଧର୍ମ ଯିବ ମୋ ନିଶ୍ୱାସେ ଜାଣ ।
ବଳବନ୍ତ ଜନ କଲେ ପ୍ରାରବ୍ଧ । ଦୁର୍ବଳ ଜନଙ୍କୁ ସାହା ଦଇବ । ହେ
ମନ୍ଦ ଅନିଳ । ଦଇବକୁ କାହାର ନାହିଁ ବଳ । ୧୧ । ପୁଣ ତାକୁ
ବୋଲେ ନାଗେଶ୍ୱର । କୁରଙ୍ଗଗତ ଅମ୍ବର ସୋଦର । ଯାହା ଠାରେ
ମନ୍ଦ ହୋଇଛୁ ଗୁଣ । ସେ କିଁପା ନ ନେବ କାମିନୀ ପ୍ରାଣ । ଯେଣ
ନାମ ବାତ । ଅଙ୍ଗ ଅବଶ କରିବା ଉଚିତ । ୧୨ । ତନ୍ୱୀ ବାଟପି
ବିଯୋଗୀନାଶନ । ଲଉ ତୁ ନାମ ବହୁ ପ୍ରଭଞ୍ଜନ । ଇନ୍ଦ୍ରକାହିଲ୍ଲ ସେବା

ଲନ୍ଧିତାକୁ । ନାଶୁ ଅଦୋଷେ ଶାର୍ଙ୍ଗୀସମ୍ଭୂତକୁ । ଭଲପଣ ଯେତେ ।
ମାତରସ୍ଥା ନାମ ଖ୍ୟାତ ଜଗତେ ।୧୩। ପୁଣି ଏମନ୍ତ ଯେନୁଷ୍ଠ ମନକୁ ।
ନ ବୋଲି କ ପୁଣ୍ୟଜନ ବୈଦ୍ୟଙ୍କୁ । କେଉଁ ଗୁଣକୁ ମନବାତ
ତୋତେ । ଦକ୍ଷିଣ ବୋଲି ବୋଲନ୍ତି ଜଗତେ । ସେହି ଗୁବେ
ତୋତେ । ଦକ୍ଷିଣ ବୋଲି ବୋଲନ୍ତି ଜଗତେ । ୧୪ । ପୁଣ ସୁନ୍ଦରୀ
ପୂର୍ଣ୍ଣି ଶଶଧର । ଦରଶନେ ଲଭ୍ଭ ମହତ ଦର । ସ୍ଥିତ କଲଙ୍କାକ୍ଷୀ ଜୀବ
ଅଦର । କହର ତାହାକୁ ଉଦେଶ ଗିର । ହେ ରଜନୀନାଥ । କାହିଁ
ପାଇଲ ଏ ଦୁଃସହ ଦାହ । ୧୫ । ଶୀତ ଗୁଣ ତୁମ୍ଭେ ସେନେହରେ ।
ରଖି ଅଇଲ ମହେଶ ଶିଖରେ । ନ ସହି ପାର୍ବତୀପ୍ରିୟ ବଚନ ।
କଲଙ୍କ ବ୍ୟାଜେ ବହିଲ ଗରଳ । କି ବଡବାନଳ । ସୋଦର ବୋଲି
ରଖିଲ ମଣ୍ଡଳ । ୧୬ । ପଣ୍ଡିତଜନେ କମଳାଭ୍ରାତକୁ । ଜନାର୍ଦ୍ଦନ
ସାହା ବୋଲନ୍ତି ତାକୁ । ଏତେକାଳେ ମୋତେ ହୋଇଲା ପ୍ରତେ ।
କନ୍ଧୁ ତୁଣ୍ଡରୁ ଯା ରଖିଲେ ତୋତେ । ତୁ ହୋଇଲେ ନାଶ । ବର-
ହଣୀ କର୍ପା ଲଭନ୍ତେ ତ୍ରାସ । ୧୭ । ତୁହି ଯେମନ୍ତ ଦନ୍ତ ବରହୁକ ।
ତୋତେ ସୁତେ ତେମନ୍ତ ନ କରେ କ । ତୋହର ଦେହକୁ ତୁହି ନ
ଗ୍ରହୁଁ । ପୂର୍ଣ୍ଣି ହୋଇ ଦୁଇଦନ ନ ରହୁ । ଏତେକେ ନ ଚେତୁ । ପୁଣି
ବଯୋଗୀ ନାଶେ ହେତ୍ ହେତୁ । ୧୮ । ମିତ୍ର ଅସ୍ତକାଳେ ଉଦୟ
ଯାଉ । ପଦ୍ମିନୀଶୋଭା ବଞ୍ଚପୀ କୁଠାର । ବରହଣୀଚକ୍ର ସୁଖଦାୟକ ।
ଅତ ଉଗ୍ରଙ୍କର ଉମାନାୟକ । ହେ ଶ୍ରୀସହୋଦର । ଉଗ୍ରଶିରୋମଣି
କୁସୁମଧର । ୧୯ । ତହୁଁ କେତେବେଳ ଅନ୍ତରେ ପୁଣି । କୁସୁମଶ-
ରକୁ ବୋଲଇ ବାଣୀ । କୁସୁମଧନୁ କୁସୁମଶାୟକ । ମଧୁପ ଗୁଣେ
ଜଣୁ ତନଲୋକ । ଅହେ ରତପତ । ମୋଠାରେ କର୍ପା କରୁଛୁ
ଅନୀତ । ୨୦ । ସେହିମତ ଅବା ଜନନକର । ତୋତେ ବୋଲନ୍ତି
ପୁଷ୍ପ ପଞ୍ଚଶର । ସାକ୍ଷାତ ବିଷକୁ ବୋଲନ୍ତି ରସ । ମୃଣାଳମାନଙ୍କୁ ବୋ-

ଲଜ୍ଜା ବଶ । ହେ ରବିଅଇଉ । କି ଯଣ ଲଭିବୁ ଅବଳା ମାରି । ୨୧ ।
ସମ୍ବର ପୋଷିଥିଲା ମିତ୍ର କରି । ପ୍ରାଣ ନାଶି ତାର ଅଣିଲୁ ନାରୀ ।
ସଖା ହୋଇ ତୋର କୁରଙ୍ଗଧର । ତାକୁ କି ନ କହୁଚ୍ଛ ପଞ୍ଚଶର ।
ତୋ ଜନକ ମନ । ତାହାଙ୍କୁ ମନ୍ଥନ କରୁ ମଦନ । ୨୨ । ବିଯୋଗୀ
ହର ନୟନନଳେ ତାଣ । ତୋ ତନୁ ପତଙ୍ଗଙ୍କୁ କଲା ନାଶ । ତେଣୁ ଅଙ୍ଗନା
ଅଟୁ ମଧୁପ୍ରିୟ । ହର ବୋଲିବାରୁ ବିଯୋଗୀତପ୍ତ । ରେ ଅତନୁଭୂତ ।
ପ୍ରାଣିଙ୍କ ଲାଗିବା ତୋର ଉଚିତ । ୨୩ । ପୁଣ କ୍ଷଣକରେ ନାଗସ୍ୱରର
ବିଧାତାଙ୍କୁ ପୁଣ ବୋଲେ ଉତ୍ତର । ତୋତେ ଯେବେ ଧାତା ବୋଲିବା
ବସ୍ତୁ । ତାହାଙ୍କୁ ବୋଲିବା ଅବା ଅବସ୍ଥ । ତୁମ୍ଭର ଉଆଶ । ଅବଳା
ନାଶକୁ ଅନଙ୍ଗବାଣ । ୨୪ । ଲୁଣ ଅନଳକୁ ସମୁଦ୍ର ଜଳ । ମୃଷା
ମୃଗଯୂଥକୁ ମାତଙ୍ଗ ବଳ । ତୀକ୍ଷ୍ଣ ଖଡ଼ଗ ମୃଣାଳମୂଳକୁ । ଅଇରାବତ
ପିମ୍ପୁଡ଼ି ନାଶକୁ । କଣ୍ଠେଇ ବନ୍ତୁଳୁ । ବ୍ରାହ୍ମଣ ବୋଲି ଲୋଡ଼ିବା
ବ୍ରହ୍ମାଙ୍କୁ । ୨୫ । ନର୍ମିଣ କନକଘଟ କୁଣ୍ଡିକ । ବର୍ଣ୍ଣକର୍ମୀ ତପା ଲୋଡ଼ା
ଏଥିକି । କରଗତ ମଣି ଦରଶନକୁ । ଦିବ୍ୟଚକ୍ଷୁ କିଅଁା ଲୋଡ଼ା ଏଥିକୁ
ଶୁକ ପଠନକୁ । ପଣ୍ଡିତ କିପାଇଁ ଲୋଡ଼ା ଏଥିକୁ । ୨୬ । ଏତେ
ପଦେ ଛାନ୍ଦ ହୋଇଲା ଶେଷ । ସର୍ବାଙ୍ଗସୁନ୍ଦରୀ ନବରସ ଭାଷ । ଜାଲା-
ତଳବାସୀ ପଦସାରସ । ଚିନ୍ତା କରଇ ଲୋଚନାଥ ଦାସ । କର ପ୍ରଭୁ
ନାଶ । ସର୍ବ ଦିବସ ଭବତାପ ତ୍ରାସ । ୨୭ ।

---

## ଦଶମ ଛାନ୍ଦ ।

### କୃଷ୍ଣକଲା ଦଶ ।

ହଂସ ଅଗତ ପଥକୁ ନିରେଖି ନିରେଖି । ଋଷ୍ୟପ୍ରତିମା ପଶ୍ୟେ
ନୃପସୁତ ଅଖି । ଗିରିନନ୍ଦୀ ପ୍ରବାହ ନିକଟ୍ଟୁ ନେତ୍ରନୀର ! ହୋଇଅଛି
କଣ୍ଠାଗତ ଜୀବନ ତାହାର । ୧ । ପରିବେଶ ହୋଇଅଛି ଦଶମ

ଦୟାକୁ । ଯତ୍ନେ ,କେବଳ ଅଛୁ ହଂସ ଆଗରକୁ । ଏହି ସମୟରେ ଯାଇ ହୋଇଲାକ ଭେଟ । ସୁପ୍ରସନ୍ନ ବଦନରେ ମଙ୍ଗଳମୁଖୁଟ । ୨ । ନୃପସୁତ ଦୁଃଖରମ ହଂସ ଦେଖି ଗଲା । ହୃଦରେ ଲଗାଇ ଭାଲୁ ଅଙ୍କେ ବସାଇଲା । ବୋଲେ କହ କହ ମୋରେ ଶୁଭସୁଧାଗିର । ନୃପ-ସୁତେ ବଚନ କହଇ ପକ୍ଷିବର । ୩ । ତୁମ୍ଭ ଆଜ୍ଞା ଯେନ ମୁ ଅନେକ ଦେଶ ଗଲି । ତୁମ୍ଭ ସମ କନ୍ୟା କାହିଁ ଦର୍ଶନ ନ କଲି । ଦେଖିଲି ଏକ କନ୍ୟାଏ ଅବନୀମୋହିନୀ । ଦରଶନେ ଅବଶ ହୋଇବେ ମୁନି-ମୁନ । ୪ । ଉତ୍ତରଙ୍ଗ କଟକ ନୃପ ପୁଣ୍ୟଧନ୍ଵ । ଉସବତୀ ବୋଲି ତାର ଏକଇ ସୁତନୁ । ତାହାର ଦୋହିତା ନାମ ସର୍ବାଙ୍ଗସୁନ୍ଦରୀ । ଚତୁର୍ବର୍ଗ ଅଛୁ ଯା ଅପାଙ୍ଗ ଅଧେ କରି । ୫ । ଶୁଣୁତରୁ ପଲ୍ଲବବ ଶ୍ରୀଅଙ୍ଗ ଲକ୍ଷିଲେ । ପାଷାଣ ଦ୍ରବ ହୋଇବ ବଚନ ଶୁଣିଲେ । ହାସ ଦେଖି ଦାସ ହୋଇ ରହିବ ମଦନ । ଯହିଁଲେ ଚପଳ ହେବ ଚନ୍ଦ୍ରଚୂଡ ମନ । ଯହିଁଲେ ତାହାକୁ ଚଇଁଭାବ ଭଙ୍ଗେ ଅଖି । ଶୁଣିଲେ ତା ବାଣୀ ବାଣୀ-ବାଣୀ କଟୁ ଲେଖି । ଶୁଣି ପଦ ଧର ଗଦଗଦେ କହେ ବାଣୀ । କେମନ୍ତ ସୁନ୍ଦର କହ ନରେଶଦୁଲଣୀ । ୬ । ତାହା ଶୁଣି କହଇ ସେ ହଂସ-ଅବତଂସ । କହିବ ମୁ କେଉଁ ଅଙ୍ଗ କେଉଁ ଶୋଭା ଲେଶ । ଅଶେଷ ବିଶେଷ କରି ,କହିବ ବୋଇଲେ । ନର୍ବାହ ନୋହିବଟ ସେ ଶେଷ ଭାରତୀରେ । ୮ । ନୀଳକଣ୍ଠ ଘନକେଶ ଦେଖି ମୋହ ହେବ । ବିଧୁମୁଖ ଦେଖିଲେ କି ଧଇର୍ଯ୍ୟ ଧରିବ । ବାମ ଚପଳଲୋଚନ ଦେଖି ମୋହ ହେବ । ଭ୍ରୂଜାଳ-ଭ୍ରୂଲତା ତାର ମୋହଅଛୁ ଭବ । ୯ ସୁନ୍ଦରୀମୁଖୁଟ ଶ୍ରୁତଯୁଗ କେ ବର୍ଣ୍ଣିମ । ଦ୍ଵିଜରାଜ ଗଣ୍ଡ ଦେଖି ହୋଇ ଯିବ କ୍ଷାମ । ଶରତ୍ଚନ୍ଦ୍ରର ମନ ଦେଖି ହେବ ବଶ । ଅମୃତ ସୁହାସ ଦେଖି ହୋଇବ ଅବଶ । ୧୦ । ପ୍ରବାଳ ମିହିର ବିମ୍ବାଧର ଦର୍ଶନରେ । ନନ୍ଦା କବିକୁ ଭଜିବେ ସକଳ ପ୍ରକାରେ । ଭାଷ ଶୁଣି ଦାସ ହେବେ

ପରଭୃତମାନେ । ଗନ୍ଧର୍ବେ ବନ୍ଦନ ହୋଇ ରହିବେ ଗାୟନେ । ୧୧
ସ୍ୱକଣ୍ଠକୁ ଉପମା ଦେବାକୁ ହୋଏ ଦର । ଚକ୍ରଧର କୁଚ ଦେଖି
ହୋଇବେ କାତର । କମଳଜଅଦ ସୁବର୍ଣ୍ଣ ସୁମନାମାଳା । ବାହୁ ଅବ-
ଲୋକନରେ ହୋଇବେ ବିକଳା । ୧୨ । ପଦ୍ମ କରପଲ୍ଲବ ଦେଖିଲେ
ଦୁଃଖୀ ହେବ । ଚମ୍ପାଙ୍ଗୁଳି ସର୍ବ କାମପ୍ରିୟ କରାଇବ । ପଞ୍ଚାସ୍ୟ ଉମ୍ବରୁ
କଟୀ ଦେଖି ହେବେ ଦୁଃଖୀ । ଦୁଃଖୀ ହେବ କଦଳର କରଭୋରୁ
ଦେଖି । ୧୩ । ହଂସକାନ୍ତ ଗତି ଦେଖି ଅଗତି ହୋଇବ । କମଳଜ
ଚରଣ ଦେଖିଲେ ମୋହ ହେବ । ମୀନଧ୍ୱଜ କରପଲ୍ଲବ ଦେଖି
ଅବଶ । ଉରଜ ଦେଖିଲେ ମୋହ ହୋଇବେ ଗିରୀଶ । ୧୪ । କାମ-
ପ୍ରିୟା ପ୍ରିୟେ କାମକେଳି ପ୍ରକାଶିନୀ । ସୁର-ତରଙ୍ଗିଣୀ ଗୁରୁ ତରଙ୍ଗ-
ଧାରିଣୀ । ସରସ୍ୱତୀ ନଦୀ ପ୍ରାୟେ ମଣିଲି ଭୂପାଳ । ଷଡରସହୃଦୟା
ବଶ୍ୟକ କେବଳ । ୧୫ । ବସନ୍ତ ଅଶେଷ ପ୍ରାୟେ ନବପୁଷ୍ପବତୀ ।
ସମାନ ନୁହନ୍ତି ତାକୁ ଅମରଯୁବତୀ । ତୁମ୍ଭଙ୍କୁ ସେ କନ୍ୟା ତାକୁ ତୁମ୍ଭେ
ବର ମାଏ । ଯାକୁ ଯାହା ରତି ହେଲା ଅନିମିଷନେଏ । ୧୬ । ପଦ୍ମା-
ସନ କମ୍ପିଲା ବଦନଚନ୍ଦ୍ର ଦେଖି । ତେଣୁ ମର୍ତ୍ତ୍ୟମଣ୍ଡଳକୁ ଅଇଲା
ମୃଗାକ୍ଷୀ । ନ ରଖିଲା ସ୍ୱର୍ଗେ ନେଏ ନିମିଷ ଥିବାକୁ । ନେଏ ଶୋଭା
ନିମନ୍ତେ ରଚିଲା ନିମିଷକୁ । ୧୭ । ଶୁଣି ଶୋକସମୁଦ୍ରେ ବୁଡିଲା ମହୀ-
ପାଳ । ଦ୍ୱିଗୁଣ ଦହିଲା ତାକୁ ମଦନଅନଳ । ସେନେହ ଅଧିକ କହି
ସହାୟ ପାଇଲା । ପର ଦୁଃଖ ଘେନି ପକ୍ଷୀ ଏମନ୍ତ ବୋଇଲା । ୧୮ ।
କର ଚନ୍ଦ୍ରାନନଚୟ ଚନ୍ଦ୍ରରୁ ଖଣ୍ଡେଦୂର । ନିକଟେ ହୋଇବ ଭେଟ
କୁମାରୀ ସଙ୍ଗର । ଏହି ମାଧବ ଶିତପଞ୍ଚମୀ ଗୁରୁବାରେ । ପ୍ରୀତି ନାମେ
ଯୋଗ ପୁଷ୍ୟା ନାମ ତାରକାରେ । ୧୯ । ପୁଷ୍ପଧନୁ ନୃପ ସ୍ୱୟମ୍ବର ଅଛୁ-
କର । ସ୍ୱୟମ୍ବର କରିବ ସେ ସର୍ବାଙ୍ଗସୁନ୍ଦରୀ । ତୁମ୍ଭ ରୂପ ଗୁଣ କୁଳ-
ଶୀଳ ଦେଖି ଶୁଣି । ସୀତ୍କାର କରିଅଛି ସର୍ବ ସୁଲକ୍ଷଣୀ । ୨୦ ।

ବିଲମ୍ବ ନ କର ବେଗେ ଉଠ ହେ ରାଜନ । ହିନ ଦିବସକୁ ପଥ ସହସ୍ର ଯୋଜନ । ଶୁଣି ରଥ ସଦନେ ପ୍ରବେଶ ହେଲେ ରାଯେ । ସୁରଥରେ ଶୋଭା ପାଏ ମଥୁରା ପରାଯେ । ୨୧ । ସର୍ବେଶ୍ୱର ପ୍ରାଯେ ଚକ୍ରଚଯ୍ୟରେ ମଣ୍ଡିତ । ହିମାଦ୍ରି ପରାଯେ ଦଣ୍ଡେ ଗନ୍ଧର୍ବେ ସଯୁତ । କେତେବା ପରାଯେ ମହାନାଦ ଅଶ୍ୱ ଧର । ଅନେକ ଅକ୍ଷରେ ଶୋଭା ସ୍ୱର୍ଗିଦଣ୍ଡଧାରୀ । ୨୨ । ହଂସଅବତଂସକୁ ବସାଇ ଅଗ୍ରକର । ଏ ରଥେ ବସିଲେ ବେଣୁଧର ଚନ୍ଦ୍ରା କର । ପାଏ ଅମନ୍ଦାଦ୍ୟେ ଚତୁରଙ୍ଗ ବଳ ଘେନ । ଚଳିଲେ ସତ୍ୱରେ ରସଢରଙ୍ଗ ମେଦନୀ । ୨୩ । ତାହାଙ୍କ ଚରଣରେଣୁ ଉଡିବାରୁ କର । ସଙ୍କେତକୁ ସତ୍ୱର ହୋଇଲେ ଅନ୍ତ ସାର । ସଜଳଲୋଚନ ଚନ୍ଦ୍ର ପ୍ରିୟା ମୁଖେ ଚୁମ୍ବ । ଦେଲା ଚଢୋଇ ବିଯୋଗୀ ବିପତ୍ତିକଦମ୍ବ । ୨୪ । କର୍ଦ୍ଦମଦେ ମାର୍ଗ ହେଲା ବରଷା ସଦୃଶ । କ ବର୍ଣ୍ଣିବା ସଇନାତ ସମୁଦ୍ର ପ୍ରକାଶ । କେହ୍ଲ ଲଙ୍ଘି ନ ପାରନ୍ତି କୁଳଧର୍ମ ଘେନ । ପ୍ରବେଶ ହୋଇଲେ ରସଢରଙ୍ଗ ମେଦନୀ । ୨୫ । ଦେଖିଲେ ସୁର ଅସୁର ନାଗ ନର ଲୋକେ । ମିଶି ସୁଖୀ ହୋଇଛନ୍ତି ଏକକୁ ଆରକେ । ଗୁଡ ତନପୁର ଶିରୀ ରହିଛି ସମ୍ଭାରେ । ସର୍ବାଙ୍ଗ-ସୁନ୍ଦରୀ ବନ୍ଧ ଦେଖିବା ହେତୁରେ । ୨୬ । ବୋଲନ୍ତି ଏ କୋହେ ରସଢରଙ୍ଗ କଟକ । ଅସାରସାର ଅରଣ୍ୟ ଧାତାଅପୂର୍ବକ । ସର୍ବ ସୀଉକାରେ ବଉ ଘେନ ସ୍ୱର୍ଗକଥା । ତାକୁ ବ ଦୂର୍ଣ୍ଣିଇ କୋହେ ପାତାଳ ବ୍ୟବସ୍ଥା । ୨୭ । ମର୍ତ୍ତ୍ୟ ମନୁଷ୍ୟଙ୍କୁ ଦୂର କଥା ଅସମ୍ଭବ ! ସର୍ବରୂପେ ବଢିଲା ସବୁର ମହୋତ୍ସବ । ସୁଧର୍ମା ଜନଇ ଶଙ୍କ ଦେଖି ଯେଉଁ ସଭା । ମନ୍ତ୍ର ପ୍ରାଯେ ସୁବର୍ଣ୍ଣେ ଘଟିତ ମହା-ପ୍ରଭା । ୨୮ । ଇନ୍ଦ୍ର ଦକ୍ଷଙ୍କର ପ୍ରାଯେ ବଜ୍ରରେ ଶୋଭିତା । ପଦ୍ମରାଗ ଧରଣୀ ନ୍ୟାଯ୍ୟରୁ କାମମାତା । ସନ୍ଧ୍ୟା ପ୍ରାଯେ ପ୍ରବାଳ ଅରୁଣ ରାଗବତୀ । ସମୃଦ୍ଧ ପରାଯେ ସର୍ବ ରତନ ବସତି । ୨୯ । ଚଣ୍ଡା ହୋଇଛନ୍ତି ଚନ୍ଦ୍ର

ଶୃରୁ ଉନ୍ମାଦୟ । ନାଟଶୃରୁ ପ୍ରାୟେ ପ୍ରକାଶନ୍ତ ବନ୍ଧୁ ରୂପ । ମରକତ
ଭିତ୍ତ ପ୍ରତିବିମ୍ବ ଦରଶନେ । ବଗୃରି ବସିଲେ ତହିଁ ମହାରାଜାମାନେ ॥
ଯେ ଯେତେ·ନରେଶ ତାଙ୍କୁ ସେହିରୂପେ ପୂଜା । କଳା ଉପଚରଙ୍ଗ
କଟକ ମହାରାଜା । ସେ ସଭାରେ ବସିଲେ ସମସ୍ତ ମହାରାଜ୍ୟେ । ବସିବା
ମାତ୍ରକେ ହେଲେ ସୁରେନ୍ଦ୍ର ପରାୟେ । ୩୧ । ଏ ନୃପ ବସିଲେ ଉତ୍ସ
ବାସବ ପାଶରେ । ଚନ୍ଦ୍ରୋଦୟ ହୋଇଲା କି ଶୁକ୍ର ସନ୍ନିଧିରେ । ତାଙ୍କ
ଦରଶନେ ଇନ୍ଦ୍ର କରନ୍ତି ବଗୃର । ବାଟେ ଭେଟ ହୋଇଥିଲେ ଉହନ୍ତା
ବେଭାର । ୩୨ । ବିବେକ ନୃପତିମାନେ ଭାଳନ୍ତି ମନରେ । ଆନନ୍ଦେ
ଅମୃ ପିବାକୁ ଶୃହିଁ ଥିବେ ନରେ । ଅର୍ଦ୍ଧ୍ୟସ୍ଥାଳୀ ଘେନି ଦ୍ୱାରେ ଥିବେ
ମୁହୂର୍ତ୍ତ । କି ବୋଲିବା ପଗୃରିଲେ କନ୍ୟା କାହିଁ ବୋଲି । ୩୩ ।
ତାଙ୍କୁ ଦେଖି ମନେ ମନେ ଭାଳଇ ମଦନ । କେଉଁ ଲକ୍ଷେ ଦେଖା-
ଇବ ପ୍ରିୟାକୁ ବଦନ । ମନ୍ଦହାସେ ପଗୃରିବ ଦେଖିଲେ ବମ୍ବୋଷ୍ଠୀ ।
ମୋ ସେନହେ ପଥରୁ କିଂ ଅଇଲ ଲେଉଟି । ୩୪ । ସୃଷ୍ଟି ଅଗେ
ଶ୍ରୀହରି ଏହାକୁ ନିର୍ମାଣିଲ । ଶିରୁ ଅଦରଣ କରି ବିଧାତାକୁ ଦେଲ ।
ସେହି ତାଙ୍କୁ ଶୃହିଁ ପ୍ରଜାପତି ଏକେ ଏକେ । ନିର୍ମାଣେ ସକଳ ସୁନ୍ଦରୀ
ତାର ଶକ୍ୟେ । ୩୫ । ଏବେ ଶୁଣ ସୁଜନେ ବଚନ ରସକଳା । ଏହି
ରାତ୍ରେ ସ୍ୱପନେ ଦେଖିଲା ନବବାଳା । ସଉଧ ସ୍ଥାନରେ ବସି ରଜତ
ସ୍ଥାଳୀରେ । ଭୁଞ୍ଜଇ ସେ ଶାଳିଅନ୍ନ ଦଧି ସଙ୍ଗତରେ । ୩୬ । ବଲ୍କର
ଝିହ୍ନେ ଶୋକ କରନ୍ତେ ବାଳକା । ଗଳେ ଦେଲେ ଗଉଣ୍ଡ ତା
ମୁକ୍ତାମାଳିକା । ହାର ଦେଇ ବୋଲେ ତନ୍ୱୀ ଛାଡ଼ ରେ ସୁନ୍ଦର ।
ପ୍ରାଣନାଥ ସଙ୍ଗେ ନେବୁ କାଲି ତୁ ସର୍ବଶ୍ୱ । ୩୭ । ଏମନ୍ତ ସମୟେ
ନିଦ୍ରା ହୋଇଲା ତା କ୍ଷୟ । ଶୃହିଲାକ ହୋଇଲାଣି ଅରୁଣ ଉଦୟ ।
ନିଦ୍ଧ୍ୟଭଜ୍ଜି ସାର ଦେବସଦନେ ଫିଟିଲା । ଦରଶନ କର ତହିଁ ସ୍ୱପନ
କହିଲା । ୩୮ । ସେହି ସଙ୍ଗେ ତାର ଦୁଃଖ ନିବେଦନ କର । ତନ୍ତୁଁ

ଅଛି ଗବାକ୍ଷ ପାଖରେ ବସନ୍ତେ ବର । ଯେତେ ଯେତେ ଅସ୍ତୁ ଅବଗୀନାପୂକ । ସଖୀ କହନ୍ତି ତାହାଙ୍କୁ ଜାଣଇ ଏଭୁ ଏବ । ୩୯ । ଏମନ୍ତେ ରାଜାମାନଙ୍କୁ ଅନେକ ଦେଖିଲା । ନ ଦେଖି କୁମର ମୁଖ ବଦନ ଶୁଖିଲା । ଛନ ଛନ ମନ ତାର ଅକୁଳ ଜୀବନ । ଝରଇ ବଦନ ତାର ସଜଳ ଲୋଚନ । ୪୦ । ହଂସ ଅବା ନାଶ ଗଲା ବ୍ୟାଧମୁଖେ ପଡ଼ି । ନଇଲେ ବା ସେ ନାଗର ବଧିଥାଏ ଜଡ଼ି । ଏମନ୍ତ ସମୟେ ତାର ହୃତରେ ବାମନେତ୍ର । ବନାହେତୁ ପୁଲକ ହୋଇଲା ତାର ଗାତ୍ର । ୪୧ । ସଖୀ ଆଗେ ଏ ଦୁଇ ବୃତ୍ତାନ୍ତ ଜଣାଇଲା । ସେ ବୋଇଲା ଅଙ୍କୁ ତୋ ସକଳ ଦୁଃଖ ଗଲା । ସେହି ସମୟରେ ହଂସ ହୋଇଲା ପ୍ରବେଶ । ବୋଇଲା ତୋ ପ୍ରାଣେଶ୍ୱର ସଭାରେ ପ୍ରବେଶ । ୪୨ । କହନ୍ତି ପୂର୍ବରେ ଏବେ ଶୁଣ ତୁ ଏତେକ । ସବୁରୂପେ ସବୁଠାରୁ ଅଟନ୍ତି ଅଧିକ । ଏଥି ଅନ୍ତେ ଦାସୀକି ବୋଲନ୍ତି ଦଣ୍ଡଧାରୀ । ପ୍ରବେଶ କରଣ୍ଟି ଅଣ ସର୍ବାଙ୍ଗସୁନ୍ଦରୀ । ୪୩ । କାମବନାଶନ ହୋଇ କାମ ବଢ଼ରଣ । ତ୍ରିପୁର ଶରଣ ହୋଇ ତ୍ରିପୁର ମାରଣ । କାଳକୂଟଧର ହୋଇ କାଳକୂଟ ନାଶ । ଭୂତପତିହୋଇ ଭୂତ ସହାରେ ପୁରୁଷ । ୪୪ । ଶ୍ୱେତର ପ୍ରିୟ ହୋଇ ଶ୍ୱେତର ମାର । ଭଗବାନ ହୋଇ ଭଗ ନାଶନେ ଉଦାର । ବପତି ସୋଦର ହୋଇ ବପଞ୍ଚ ବାର । ଭୋଗବବର୍ଜିତ ଭୋଗୀକୁଳ ଅଲଙ୍କାର । ୪୫ । ହରପର ପ୍ରିୟ ହୋଇ ହରପର ନାଶ । ବଶ୍ୱନାଥ ହୋଇ ବଶ୍ୱ ସହାରେ ପୁରୁଷ । ଗୋପତି ହୋଇଣି ଗୋ ନଗ୍ରହଣେ ତତ୍ପର । ଅମ୍ବୁଜନନ ହୋଇ ଅମ୍ବୁ ସହାର । ୪୬ । ତାହାଙ୍କର ସୁନ୍ଦର ବଷୟ ବଣ୍ଣଗଦ । ସୁରାସୁର ମଉଳ କମଳାଟିଁ ପଦ । ଦୀନ ଲୋକନାଥ ଦାସ ତାହା ଧର ବର । ହେଲେ ଭବ ସସାର ଦୁସ୍ତର-ସିନ୍ଧୁ ପାର । ୪୭ ।

---

# ଏକାଦଶ ଛାନ୍ଦ ।

## ରାଗ କଲ୍ୟାଣଅହାରୀ ।

ଚତୁର୍ମୁଖ ଷଡ଼୍‌ମୁଖ ବକ୍ତାରରୁ ସେ ଯେ ଛନ୍ଦ କଥ୍ୟ ନଇଲେ । ଯାହୁଁ
କୁବେର ହର ସ୍ୱକ ଅସ୍ୱକ ରୂପ ନେଏକୁ ନବର୍ତ୍ତିଲେ । ଅନ୍ତର । ଯାମି-
ନୀ ବସ୍ତୁକୁ ରଖିଲ । ଇନ୍ଦ୍ର ଅଧୀନତା ସକଳ ଦେବତା ମନକୁ ଆଉ
ନ ଆଣିଲ । ୧ । ଶୂର ସୁନ୍ଦର କୁଳଜ ବୁଦ୍ଧିମାନ ପଣ୍ଡିତ ସ୍ୱଭାବେ
ସର୍ଥୀରେ । ଅଇଲେ ଇତର ନୃପ ଲୋଭର ରେ ମୂର୍ଖମାନେ ଅହଙ୍କା-
ରରେ । ଅଇଲେ । ଆଉମାନେ ଏହା ବସ୍ତୁ ହ । ଚତୁରବଦନ
କପାଳ ଲେଖନ ଯେଣୁ କର ଜାଣି ନ ପାର । ୨ । ଏଥୁ ଆନରସ
ଶୁଣ ହେ ବହୁଷ ପୁଷ୍ପଧନୁ ଗଙ୍ଗା ଅଙ୍କାରେ । ସୁକୁନ୍ଦଦନ୍ତୀ ଦନ୍ତିବର-
ଗମନୀ ଧନ୍ୟା ସହଚରୀନିକରେ । ସମସ୍ତେ । ସଦ୍ଧରେ ହୋଇଲେ ହରଷ ।
ମିଳଲେ ମଞ୍ଜୁଳ କୁଟିଳ ପ୍ରଲମ୍ବ ପଦ୍ମଲକେଶୀ ପାକୁଣ । ୩ । ସୁକୁନ୍ଦ-
ରଦନା ଶଶାଙ୍କବଦନା ସୁସ୍ତନା ସହଚରୀଗଣ । କେତକୀ ଗର୍ଭିଙ୍କ କବରୀ
ଅର୍ଦ୍ଧିକ ଭୂଷଣନେଇବାର ରଚଣ । ବାଲା ଯେ । ବୋଲନ୍ତି ଦେଖ
ଅଦଭୁତ । କର ଅନୁକମ୍ପା ଯେବେ ସ୍ତ୍ରୀରଶମ୍ପା କମ୍ପାଉଚ୍ଛୁ ଭଜନ୍ତିଗତ । ୪
ଘଷି ଘନସାର ଶିଶୁକୃଷ୍ଣସାରନୟନୀର ଅପ୍ରଘନରେ । ଦେଲେ ସୁନ୍ଦର
ସିନ୍ଦୂରବିନ୍ଦୁ ଭାଲେ ଚନ୍ଦନ ଉର୍ଦ୍ଧ୍ୱବିନ୍ଦୁ ଉପରେ । ସୁଗନ୍ଧ । ଅଲକା-
ବଳୀ ଅଳକରେ । ଲେଖି ମୃଗମଦ ପତ୍ରାବଳୀ ମଦକଳମଦରକ୍ଷୀ ଗଣ୍ଡ-
ରେ । ୫ । କଲେକ ରଞ୍ଜନ ଅଞ୍ଜନ ନଳନ ନୀଳନଳୀନ ନୟନରେ ।
ଲେଖିଲେକ ଲାକ୍ଷା ଗୁରୁ ପକ୍ଷଲାକ୍ଷା ରଙ୍ଗ ରାଜକଚରଣରେ ।
ବାଜାର । ଚରୁକେ ଭ୍ରମରକା ଲେଖି । ଯଥୋଚିତ କର
ଅଲଙ୍କାରେ କନ୍ଦଗତକ ବେଶ କଲେ ସଖୀ । ୬ । ସା-
ରଙ୍ଗ କୁରଙ୍ଗ ତରଙ୍ଗନେଇବାକୁ ସୁରଙ୍ଗପଢଣୀ ପିନ୍ଧାଇ । ସୋମକର

ସମ ସୁଗନ୍ଧ କୁସୁମ-ମାଳକା କରେ ଦେଲେ ନେଇ । ବୋଇଲେ ।
ବାଳାଙ୍କୁ ଅଙ୍କୁ ବାମ-ନ୍ଦର । କଇବେ ଅନ୍ତର ଅନ୍ତରଗତରୁ ଅନ୍ତର-
ଯାମୀ ଯୋଗେଶ୍ୱର । ୭ । ପୁଷ୍ପକପଥ ଦେଖି ସଖୀ ଶୁଭ ପ୍ରବେଶ
ନ କରବୁ ଚଲେ । ଚଞ୍ଚଳନୟନ ଅଞ୍ଚଳେ ଘୁଞ୍ଚିଲେ ଚଞ୍ଚଳ ହୋଇ-
ବେ ସମସ୍ତେ । ବାଳାରେ । ଚନ୍ଦ୍ରକାନ୍ତମଣି ଯେସନେ । ଦୃଢ
ହୋଇଲେ ଦ୍ରବ ହୋଇଯାଇ ରଜନୀବର ଦର୍ଶନେ । ୮ । ଏମନ୍ତ
ବୋଲିଣ ଶ୍ରବଣମଙ୍ଗଳ ମଙ୍ଗଳପ୍ରଦ ଗୀତ ଗାଇ । ପରବାଦନୀ-ବାଦନୀ
ସହଚରୀ ନଅନ୍ତ ପଦୁଣ୍ଡ ମଣାଇ । ତାହାଙ୍କ । ଗତ ନଦୀ କରେ ହଂସଙ୍କୁ ।
ହୁଳହୁଳ ନାଦ କମ୍ବୁ ବଷାଦ କଲରବ କଳକଳଙ୍କୁ । ୯ । ସକଳ
ସଜନୀ ସକଳ ରଜନୀକରବଦନାଙ୍କୁ ସର୍ଯୀରେ । କଲେ ପ୍ରିୟତମା ସୁଷମା
ସୁଧର୍ମୀ ଶୋଭିଜତ ସଭାମଧ୍ୟରେ । ବାଳା ଯେ । ଉଦ୍ଧ ହୋଇ ସଭା
ମଧ୍ୟରେ । ସକଳ ଜନଙ୍କୁ ଚଉବର୍ଗ ଦେଲା ଇଷିତ ଅବଲୋକନରେ ।
ଦେଖି ସେ ସକଳ ନରେଶ ସକଳ ଶରଦଶଶୀବଦନାଙ୍କୁ । ବୋଲନ୍ତି
ଜଗତେ ଥିଲେ ହେବ ଯେତେ କେହି ସମ ନୋହେ ଏହାଙ୍କୁ ।
ବାଳା ରେ । ଅଭ୍ର ଅଭ୍ର କଥା ପୁରତେ । ଦେଖିଲାମାତ୍ରକେ ଜର
କରଦେଲା ସଂସାର ସୁଖ ଅନ୍ତ ଯେତେ । ୧୧ ।' କବି କେତେ ମନୁ
ନର୍ମିଣିଲା ତନୁ ସଫଳ ଜନ୍ମ ବେଦକର । ଦେଖିଣତ ମନୁ ମୂର୍ଚ୍ଛିବେକ
ମନୁ ଅମରନୃପ ଅଧିକାର । ଶୋଭାରେ । ଧନ୍ୟ ଏ ନରେଶନନ୍ଦନୀ ।
କୋକିଳବଚନା ସୁସ୍ତନା ହାଟକବରନା କୁଟଙ୍କଲୋଚନା । ୧୨ ।
ତା ପୁଣ୍ୟ ବାସବ ଶିବ ପଦ୍ମଭବ ନ ଲଭନ୍ତି ଏକକଲା । ଯାହା
କଣ୍ଠେ ମାଳା ସ୍ନେହେ ଦେଇ ବାଳା ହୋଇବ କାମସିନ୍ଧୁ ଭେଳା ।
ବାଳା ରେ । ତୋହ ସମ ନାହିଁ ସଂସାରେ । ଛତ ମନସିଜ କେଳ
ସରସିଜ ଉରଜ ଲାଗିବ ଯା ଉରେ । ୧୩ । କାହାର କପାଳେ
କେଉଁ କାମ୍ୟବଲେ ଲେଖିଥିବ କଞ୍ଜଅସନ । ଏ ନାଗରତନ ଜାନୁ

ସିଂହାସନ ହରଣ କରିବ ମଦନ । ବାଳା ରେ । ଧନ୍ୟ ତୋ ଜନନୀ
ଜନକ । ଜଳଜନେତ୍ରାର ବପୁର କପାଳେ ଲେଖିବ ଯେ ଗନ୍ଧଫ-
ଳକ । ୧୪ । ଧନ୍ୟ ଏ ଭବନ ହୋଇଲେ ଚନ୍ଦନ ହୋଇଛୁ କୁଚତଟେ
ଲଗ୍ନ । ଧନ୍ୟ ଏ ବସନ ଗାଢ଼ ଆଲିଙ୍ଗନ କରଅଛୁ ସ୍ମରସଦନ । ବାଳା
ରେ । ଧନ୍ୟ ଏହି ଖଦିରସାର । ଯାହା ଏ କୁରଙ୍ଗ ସୁରଙ୍ଗନୟନା
ଅଧରେ ହୋଇଅଛୁ ପୂର । ୧୫ । ଦେଖିଲେ ମଦନମୁକୁର ବଦନ
ବଧୂ ବଣଚନ୍ଦ୍ରା ଖଣ୍ଡବ । କୁବେରନନ୍ଦନ ଦେଖିଲେକ ଜାନୁ ରମ୍ଭା
ପାଣକୁ ନ ଭଜିବ । ବାଳା ରେ । ଅଉ କସ ହେବ କହିଲେ ।
ଖଟ୍ବାଙ୍ଗଧର ଅର୍ଦ୍ଧାଙ୍ଗ ଯୋଗ ଭଙ୍ଗ ହୋଇବ ଅପାଙ୍ଗେ ଚାହିଁଲେ । ୧୬
ରମ୍ଭା ରତି ରମା ଇନ୍ଦ୍ରାଣୀ ଯେ ଉମା ଅବ ଯେତେ ବାମଲୋଚନା ।
ଗଢ଼ିବ ଏହାକୁ ବିଧିର ପୂର୍ବରୁ କରୁଥିଲା ଧାଡ଼ି ରଚନା । କାଳକୁ ।
ମହତ ଉତ୍ସାହେ ନରେଶ । ଦେଖି ନ ପାଇଲେ ପ୍ରଥମେ ପଡନ୍ତ
ଦୃଷ୍ଟିଠାରୁ ଆନ ପ୍ରବେଶ । ୧୭ । ପ୍ରଥମେ ଯୁବତୀମଣିଙ୍କ ନୃପତ
ମଣିଲେ କୁସୁମବ୍ରତତୀ । ନବପୁଷ୍ପବତୀ ସୁମନସପତି ମଧ୍ୟ କରେ ଯେଣୁ
ଅଗତି । ବାଳାକୁ । ପୁଣି ମଣିଲେ ସର୍ବ ସବେ । ସୁବର୍ଣ୍ଣ କେତକୀ ସୁବାସେ
ଶୋଭିତ ସୁମନସ କାଳ ପର୍ଯ୍ୟେ । ୧୮ । ଅବନୀ ପର୍ଯ୍ୟେ ମୋହିନୀ
ମଙ୍ଗଳଜନନୀ ସ୍ନିଗ୍ଧ ରସବତୀ । ସନ୍ଧ୍ୟା ପର୍ଯ୍ୟେ ଲକ୍ଷଣ ତରଙ୍ଗରେ
ଗାଢ଼ କମଳଜ ଉନ୍ନତି । ବାଳାକୁ । ମଣିଲେ ମହେଶ ମହିଷୀ । ଗଜ
ଚୂଡାମଣି ମାନସମୋହିନୀ ଗଉରୀ କାଳିକା ସୁକେଶୀ । ୧୯ ।
କୁରୁକ୍ଷେତ୍ର ପ୍ରାୟେ ପ୍ରକାଶ ଅନ୍ତରେ ଅଧିକ ଧନୁର୍ଦ୍ଧର୍ଯ୍ୟ ତେଜ । ପ୍ରମତ୍ତ
ଦିବାକରସୁତ ବଚନେ ନୋହିବ କେହୁ ଦୃଢଧୈର୍ଯ୍ୟ । ବାଳା ଯେ ।
ସ୍ୱର୍ଗପୁର ସମ ସୁରେଖାଃ । ଯେଣୁ କଚ ତେଣୁ ଶୋଭା ପାଉଛନ୍ତି ହର-
ଚନ୍ଦନ ଚର୍ଚ୍ଚରେଖା । ୨୦ । ଲକ୍ଷ୍ମୀ ପର୍ଯ୍ୟେ ବଧୂ ମୁଖ ଭ୍ରମରସୁକେଶ
ରସଅଧିନନ୍ଦନା । ବ୍ରହ୍ମାଣୀ ପର୍ଯ୍ୟେ ଅମ୍ବୁ ଜନ୍ମ ପକାଶିନୀ ମଣ୍ଡଳ-

ଗମନା । ବାଲା ଯେ । ଗଉରୀ ଭୁବନମୋହନୀ । ଶଚୀ ସଦୃଶେ
ହୋଇଅଛୁ ଅନେକଜନ୍ମକ ଆନନ୍ଦଦାୟିନୀ । ୨୧ । ଭେବଷ ଗ୍ରୁକ୍ଣୀ
ପ୍ରାୟେ ସ୍ତନଯୁଗ ଗମ ପୀଡିବାଏ ମଣ୍ଡିତ । କମଳା କଣ୍ଠଲାବଲାସ
ପରାଏ ନୟନ ଚଞ୍ଚଳତା ଯୁତ । ବାଲା ଯେ । ଶୁଭସ୍ତାସ୍ଥ ହାସ ପଣ୍ଡିତା ।
ସୁରସଙ୍ଗ ପ୍ରାୟେ ସ୍ତନସ୍ଥ କବରୀ ସୁମନାଗଣରେ ମଣ୍ଡିତ । ୨୨ । ଏଥୁ
ଆନ ରସ ଶୁଣ ହେ ବନ୍ଧୁ ସୁନ୍ଦରୀମଣିର ସମୁର । ଶ୍ରମ ପଣ୍ଡବମ
ଧାରଣୀ ମୁକୁରହୃଦୟା ସଖୀ କହେ ଗିର । ସକଳ । ଭୂପାଳ କୁଳ
ବଳ ଗୁଣ । ଦେଖ ସୁଯଶ ପ୍ରତାପ ନାମ ଅଦ କରଇ ତୋହରେ ଉଦ୍ବେ-
ଦନ । ୨୩ । ଦେଖ ରସବନ୍ତ ଏ ଯେ ସୁରପତ ସୁନ୍ଦର ସୀମା ପୁରନ୍ଦର ।
ତୋ ସ୍ତନ ଗମନ ସମ ଅଛୁ ବୋଲି ଐରାବତ ଗଜେ ଅନ୍ତର ।
ବାଲା ରେ । ଶଚୀପ୍ରିୟ ହୋଇ ବବେକୀ । ଜାନୁ ଉପମା ନାମ
ମିଶ୍ରମାନଙ୍କେ ପ୍ରିୟତମା କଲା ନଠୀକ । ୨୪ । ଦେଖିବାକୁ ତୋର ସକଳ
ସୁନ୍ଦରମନ୍ଦର ନିରୁପମ ବେଶ । ବହନ୍ତି ବଶାଳ ପଦ୍ମକଳ ପ୍ରାୟେ ସହସ୍ର
ଅନମେଷ ଦୃଶ । ବାଲା ରେ । ମାଳା ଦେଲ ମାଗେ ଏହାକୁ । ନୋହ
ଥରଣ ପରଶେ ହେମ ପ୍ରାୟେ ଉଜଳୁ ଦେବତା ସବକୁ । ୨୫ । ଯେଉଁ
ଦଗପାଳ ତରଙ୍ଗାଳ ତୋର ଉପରେ ନୁହନ୍ତି ସାକ୍ଷାତ । ସେହିମାନେ
କର ଯୋଡ ଶିରପର ହସ୍ତ ହୋଇଥିବେ ପୁରତ । ବାଲା ରେ ।
ଏ କହବ ଅଉ ଅଧିକ । ହରଭପଦ୍ମର ଜୀବସୁଖକର ଫଣ୍ଡଣର
ଯାହା ସେବକ । ୨୬ । ଦେଖ ନୃପାତ୍ମଜା ଏ ଯେ ଶେଷରାଜା ଗିରଜା-
ବଲ୍ଲଭଭୂଷଣ । ( ବରେଧଭାଷା ) ଅସ୍ପର୍ଶ ବାସ ଅନମିଷ ଅଶେଷ
ଅଶ୍ରବଣ କହୁ ଶ୍ରବଣ । ବାଲା ରେ । ପାଣଜନ ନେଇ କର୍ଣ୍ଣିର ।
ଏକାବେଳକରେ ଦେନ ପାରଇ ଏ ତୋର ରୂପ ଗିର ମଧୁର । ୨୭ ।
ଏ ଯେ ଓଡ୍ରବଂଶ୍ମ ନରେଶ ଗରଷ୍ଠ ବଳଷ୍ଠମାନଙ୍କରେ ଶ୍ରେଷ୍ଠ । ପ୍ରକଟ
ଜଗତେ ମର୍ତ୍ତ୍ୟବଇକୁଣ୍ଠବାସୀ ସେବା ଅକପଟ । ବାଲା ରେ । କବ

ପଣ୍ଡିତ ଗୁଣଗ୍ରାହୀ । ଯାହା ଉପୁନାସୀ ସୁଲୋଚନା ବାଉଳରେ ବର୍ଣ୍ଣି
ହେଲ ମହୀ । ୨୮ । ଶ୍ରୀପୁରୁଷୋତ୍ତମ ବୋଲି ଏ ଉତ୍ତମ ନରେଣ
ଦେଶ ଏକଦେଶ । ଅଛୁ କ୍ଷେତ୍ରବର ଦାରୁକଲେବର ହୋଇ ଯହିଁ
ବସ୍ତୁ ପ୍ରକାଶ । ବାଲା ରେ । ହୋଇଛୁ ଏ କଥା ପ୍ରକଟ । ଯହିଁ ପାପୀ
ନରମାନେ କଳେବର ସଙ୍ଗେ ଛାଡନ୍ତି ଗାତକୂଟ । ୨୯ । ଦେଖ ରେ
ସୁକେଶୀ ଏ ଯେ ବାରଣସୀ ନୃପଙ୍କ ପୁରପୁରନ୍ଦର ( ଶ୍ଳେଷ ) ଉପ-
ବଣୀବର ବାହୁଳ ପୀଡାରେ କଉଡୁକୀ କରି ଯାହାର । ବାଲା ରେ ।
ଯହିଁ ଶରୀର ଅବଧାନେ । ଭବ ଛାଡ ଭବଗ୍ରାବକୁ ଧରନ୍ତି ବୁଦ୍ଧ
ଭୂଷଣ ପରସନ୍ଦେ । ୩୦ । ମନୋଦଶନାଥ ମନୋରଥରଥ ମହାରଥ ଏ
ଚରଞ୍ଜୀବ । ସୁରସୁର ଶିରସ୍ୱରଙ୍କେ ପୂଜିତ ଚରଣେ ଅତୁଳ ପଦବୀ ।
ବାଲା ରେ । ପୁଣ୍ୟଜନ ବସ୍ତୁସେବକ । ଖିତଭୂଷଣ ଅଗ୍ରଖଣ ଏ ବସ୍ତ-
ଷଣ ଦୂଷକେ ଦୂଷନ୍ତକ । ୩୧ । ନିତିବଳସ୍ୱ ବଳସ୍ୱ ହୃତ ଲଙ୍କା
ଲଙ୍କାପୁର ପୁର ମନ୍ତ୍ରକ । ଯାହା ଉପବନ ନନ୍ଦନ ନନ୍ଦକ ମଧୁପଞ୍ଚମ
ମଧୁବନ । ବାଲା ରେ । ମାଲା ଦେଲେ ଏହା ଗଳାରେ । ସାଧବା-
ଅଗ୍ରଣୀ ସୁଶ୍ରେଣୀ ମହର୍ଷୀ ଗଣ୍ଡି ହେବ ନିଜ ନାମରେ । ୩୨ । ଯାହା
ଏକ ସେନା କରପାରେ ଚୂନା ମୂର୍ଚ୍ଛି ପ୍ରହାରେ ଚୟକୂଟ । ହେମ
ଯେଉଁ ପୁରେ ମୃତ୍ତିକା ସଙ୍ଗରେ ପଦରକୁ କଲ୍ପ ପାଳଟ । ବାଲା ରେ ।
ନାହିଁ ସେ ପୁରକୁ ଉପମା । ସ୍ୱର୍ଗ ଅଧିକ କରି ଯାହା ଇସ୍ପୃରୁ ନିର୍ମାଣ କଲ୍ପ
ବିଶ୍ୱକର୍ମା । ୩୩ । ଦେଖ ରେ ସୁକାନ୍ତି ଏ ହାଦେ ବରଷ୍ଟବଣେ ଭବ
କାନ୍ତି ଗଞ୍ଜନ। ଯାହା ଯାଗବଲେ ଦଗପାଳେ କାଳେ ନ ଦେଖିଲେ ପ୍ରିୟା
ବଦନ । ବାଲା ରେ । ଏ ଯେ ଶୃତପଥ ପଥିକ । ସଜ୍ଜନ ଶଶାଙ୍କ ଦୃଷ୍ଟିବ-
ନାଶକ ବବେକ ଦଉଦ୍ରପୋଷକ ।୩୪। ଏ ଯେ ମଧୁବନ ନୃପ ନିଧୁବନ ବିଚ-
କ୍ଷଣ ବଧୁବଦନ । ଲାବଣ୍ୟ ସଦନ ସୁନ୍ଦରଦନ ଏହା ଇଷ୍ଟଦେବ
ମଦନ । ଏ ହାଦେ । ଦକ୍ଷିଣନାୟକ ସଙ୍ଘାତ । ଦରଶନେ ହୁଅ ପତ-

ବୃତା ବୃତ ପଦ୍ମନଚମ୍ପୁ ମଧୁବ୍ରତ ।୩୫। ଦେଖ ରେ ସୁମଧ୍ୟା ଏହାଦେ ଅ-
ଯୋଧ୍ୟା ନରନାଥଙ୍କ ପଟ୍ଟଣରେ । ସପ୍ତଦ୍ୱୀପର ମହୀପ ଅନେକ ଦର୍ପଦଳନେ
ତୁଳବର । ବାଳା ରେ । ପଦ୍ମହସ୍ତଙ୍କ ଏହା ବଶି । ମଣ୍ଡପସ୍ଥ ବନ୍ଦ୍ରଗିର-
ଦଶ ଗୃହେ ମଣିଲେ କୃଷ୍ଣାସ୍ବାମୀ ଜଣୀ । ୩୬ । ଯାହାଠାରୁ ଦୃଷ୍ଟି
ନେଉଛୁ ବିମ୍ବୋଷ୍ଠୀ ଦେଉଛୁ ଅପମାନ ସୃଷ୍ଟି । ଯାହାକୁ ଗ୍ରହୁଛୁ
କରୁଣ ତାହାର ଉପରେ ସୁଧାସାର ବୃଷ୍ଟି । ସଜନୀ । ଯେତେ ରାଜା
ନାମ କହିଲି । କେବଳ ଶ୍ରବଣେ ଶୁଣି ସରୋଜାକ୍ଷୀ ନେତ୍ରପଥକୁ ନ
ଆଣିଲୁ । ୩୭ । ଦେଖ ରେ ଅବଳା ଏ ଯେ ରତ୍ନମାଳା ନରେଶ
ଅଜନୀତଳକ । ଅବଲୋକନରେ ଅନଙ୍ଗ ଶରରେ ଦହିବ ରଜନୀ
ସାହିକ । ବାଳା ରେ । ଦେଖିଲେ ଯକ୍ଷିଣୀନିକରେ । ଧନଦ ରାଜ-
ରାଜଚନ୍ଦ୍ରମେ ସେବବେ ପାଞ୍ଚୁଣେ କୁବେର ବୃଦ୍ଧିରେ । ୩୮ । ଶ୍ଳେଷ୍ମା
ତୁମୋଦଶ ପ୍ରାପ୍ତେ ଶୋଭା ପାଉଅଛୁ ଅବଳା ଲକ୍ଷ୍ମୀବିହାରକ ।
ଖଗେଶ୍ବର ପ୍ରାପ୍ତେ ପ୍ରତେ ହେଉଅଛୁ ଯହୁଁ ଅହୃତାପକାରକ ।
ବାଳା ରେ । ଶ୍ରୀରାମସିଂହ କୁଳଚନ୍ଦ୍ର । ସୁମନସବର ଘନରସଧର

ଗଜବାହନ ବେଣୁ ଇନ୍ଦ୍ର । ୩୯ । କରପଦ୍ମ ଗଦା ବଳ ପ୍ରତାପକୁ ବ୍ରହ୍ମ-
ପ୍ରିୟା ଯେବେ ଦେଖିବ । ପରମ ଅନନ୍ଦେ ପ୍ରେମଭରେ ମୁଦେ ପାବକ
ଅଙ୍କ ପାସୋରିବ । ବାଳା ରେ । ସଜ ଦେଖି ଶଣଲାସ୍ତ୍ରନ । ପାଦ୍ମଘ-
ରମଣ ରମଣ ହୋଇ ଗ ଅନନ୍ଦ ହୋଉଅଛୁ କ୍ଷୀଣ । ୪୦ । ଅଳୀ
ମୁଖୁଁ ବାଲୀ ଗୁଣାବଳୀ ଶୁଣି ଅନନ୍ଦସମୁଦ୍ରେ ବୁଡିଲା । ଅତିସ୍ନେହ
ବଳେ ମାଳା ଦେଇ ଗଳେ ଅନ୍ତରଅଲିଙ୍ଗନ କଲା । ବାଳା ରେ ।
ଦେଖି ନ ଦେଖି ମୁଖଶଶୀ । ଅନଙ୍ଗ ଘୋର ଅନ୍ଧକାରେ ଅଦୃଷ୍ଟ
ପଥ ନ ପାରେ ଦେଣ୍ଟୁ ଅସି । ୪୧ । ଯେତେବେଳେ ତାର ଗଳେ
ପୁଷ୍ପମାଳ ମଣ୍ଡିଲା ମନ୍ଦଗତି ବାଳା । ପ୍ରତ୍ୟକ୍ଷ ହୋଇ କି କୁମାର
କଣ୍ଠରେ ପଡିଲା କାମଶର ମାଳା । ତହିଁରେ । ପରଣ କେମନ୍ତେ

ରହନ୍ତା । ଏହି ରଙ୍ଗଣି ସଙ୍ଗମୀ ଅଙ୍କେ ନେବା ପଣ୍ଡାସନା ଯେବେ ନ ଥାନ୍ତା । ୪୨ । ଦେଖି ଦେବରାଜ ଲଭି ଅତି ଲାଜ ବୋଲନ୍ତି ଏବେ ବୃଦ୍ଧି ବସ । ଏ ଅପମାନରୁ ଦୁଃସହ ହୋଇବ ସଖିର ବନ୍ଧୁ ପରିହାସ । ଦେଖିଣ । ଅଉ ସମସ୍ତ ରାଜାମାନେ । କ୍ଷଣେ ନ ରହି ପଳାଇଲେ ମହତ ମହତ୍ତ୍ୱ ଖଣ୍ଡ ଅପମାନେ । ୪୩ । ଅହେ ସାଧୁଜନେ ନ ଧରିବ ମନେ ବିଷାଦ ବିଷ କଳପଣା । ଭବଜଳୁଁ ତରି ଜଗନ୍ନାଥ ନାମ ନିରଂତେ କରି ସ୍ମରଣା । ସ୍ୱଜନେ । ଅହେ ବୃନ୍ଦାବନଚନ୍ଦ୍ରମା । ଲୋକନାଥ ଦାସ ରଙ୍ଗନୀ ବିବସ ଅର୍ଜ୍ଜିତ ଦୋଷ କର କ୍ଷମା । ୪୪ ।

———:୦:———

## ଦ୍ୱାଦଶ ଛାନ୍ଦ ।

### ରାଗ ବଙ୍ଗଳାଶ୍ରୀ ।

ଏଥୁଅନ୍ତେ ଜନେ ଶୁଣ ସାବଧାନେ ସୁନ୍ଦରୀ ବିବାହ ରସ ।
ଜିହ୍ୱା ପରାୟେ ମାନସ ଖଞ୍ଜନକୁ କର୍ଣ୍ଣକୁ ନବମ ରସ । ୧ ।
ନୃପତିନନ୍ଦନ ଜଗତବନ୍ଦନ ବରବେଶେ ବଜ ଅଣି ।
ବେଦବରଣ କରି ନୃପ ମନ୍ତ୍ରୀଙ୍କ ଏମନ୍ତ ବୋଇଲେ ପୁଣି । ୨ ।
ରମା ପୂଜା କରି ଲବଣ ଚମସି ଅର୍ଥେ ଅଷ୍ଟ ସୁକୁମାରୀ ।
ଏ ବଚନେ ତାଙ୍କୁ ସୁବେଶ କରନ୍ତି ଦନ୍ତୀଗତି ସହଚରୀ । ୩ ।
ସଙ୍ଗରହେ ଶୋଭା ଅଧିକେ ହୋଇଲେ ସୁନ୍ଦରୀ ଅଙ୍ଗରେ କପି ।
ତମ ଲପର୍ଶ କନକଲତା ଅଙ୍ଗେ ପର୍ଣାବଳୀ ପ୍ରାୟେ ଦଟି । ୪ ।
ନେଲେ ସଜନୀଙ୍କ କର ଧରି ସଖୀ ଗଉରୀ ଦରଶନକୁ ।
ଏମନ୍ତେଣ ପୂଜ ସୁମାଲିନପୂଣ ରଚଲେ ଅନ ବେଶକୁ । ୫ ।
ଲବଣ ଚମସି ବଧିରେ ଗଉରୀ ମଣ୍ଡପ ପାଶେ ପ୍ରବେଶ ।
ଧଇଲ ଲୋକ କର ଏଙ୍କା ଜାଣଇ ଧଇଜ ଅନ୍ତର ଦାସ । ୬ ।
ସମସ୍ତ ଲୋକେ ଏମନ୍ତ କହୁରନ୍ତି ଅଞ୍ଜଳି ପକାଉଅଛୁ ।
ଏହି କଣୁଆସ ସବେଙ୍ଗଜନେଙ୍କୁ ଅପସର ହେଲା କଛୁ । ୭ ।

ଏମନ୍ତ ଚାହିଁଲେ କେହି ନ ଜାଣିଲେ ଚଞ୍ଚଳାପ୍ରାୟ ଲୋଚନେ ।
ସେତେ ଚଞ୍ଚଳାହିଁ ଲେଖିଲେ ପାର୍ଶ୍ୱେ ରହିଲେ କାନ୍ତ ନୟନେ । ୮ ।
ବଲ୍ଲର ବଦନ ଲାବଣ୍ୟସିନ୍ଧୁରେ ରହିଲା ନୟନ ବୁଡ଼ି ।
ଏଣୁ ଅଙ୍ଗନାକୁ ଅସିବା ବେଳକୁ ନ ଦିଶଇ ଦଶଦିଶ । ୯ ।
ଅତ୍ୟନ୍ତ ସୁରଙ୍ଗ ନବ ଅନୁରାଗ ନ ଛାଡ଼ଇ ଆସିବାକୁ ।
ଅତି ବଳବତୀ କୁଳଲଜ୍ଜା ସ୍ଥିର ନ ଦିଅଇ ଚାହିଁବାକୁ । ୧୦ ।
ଯେତେବେଳେ ତାର ଦଇବବଶରେ ଅଜ୍ଞାନ ତମ ଜଳଦେ ।
ଚେତନା-ଚଞ୍ଚଳା କ୍ଷଣେ କ୍ଷଣେ ଲୀନ ହେଉଅଛି ହୋଇ ଉଦେ ।୧୧
ଜାଣି ତା ରଜନୀକୁନ୍ତଳା ଅବଳା ମନୋଭିଜ୍ଞା ସହଚରୀ ।
ଘେନ ଅଇଲେ ପୁରକୁ ପୁରେନ୍ଦ୍ରୀଙ୍କ କର ଅବଲମ୍ବ କରି । ୧୨ ।
ଯେତେବେଳେ ତାର ନୟନପଥରୁ ଗଲେ ବୁଲୁ ଶାବକାକ୍ଷୀ ।
ମଦନ ଚଉର୍ଯ୍ୟେ ଧଇର୍ଯ୍ୟ ତାହାର ନ ରଖିଲା ଅଉ ବାକି । ୧୩ ।
ପାଣିଗ୍ରହଣକୁ ଏଣିନୟନାକୁ ଆଣି ପୁଣି ସହଚରୀ ।
ଚନ୍ଦ୍ରମାବଦନୀ ଚନ୍ଦ୍ରମା ପ୍ରକାଶେ ସୁନ୍ଦର ଶୋଭି ସର୍ବରୀ । ୧୪ ।
କଉତୁକରେ ଆଳୀ ବାଳୀ କରେ କଉ ଭୁକ୍ତେ ହୃଦ୍ର ବାନ୍ଧ ।
ଦୋଳନ୍ତ୍ର କବଧ ବନ୍ଧେ ବାନ୍ଧ ହେବା ଅହୁଁ ତୋ ହୋଇଲା ହିଡ଼ି ॥
ଜନକ ଦୋଳରେ ଜାନକୀ ପାର୍ଶ୍ୱେ ବସିଲେ ଛଳଦକ୍ଷିଣୀ ।
କୁମରକୁ କୋଳେ ଧରି ମହାରାଜା ଦଶରଥ ପାର୍ଶ୍ୱେ ଦିଶି । ୧୬ ।
ଅବନୀନନ୍ଦନା ହୋଇଛି ସୁସ୍ତନା ବୃତ ଲଜ୍ଜା ପୁରବନେ ।
ତଥାପି ତା ମୁଖ ନିର୍ମଳ ନଥରେ ଦେଖିଲେ ସକଳଜନେ । ୧୭ ।
ଏ ଦୁହିଙ୍କଠାରୁ ଯାଉଛି ମୋହର ଏହିଠାରୁ ଅଧିକାର ।
ଦୁହିଙ୍କର ତନୁ ଦହୁଛି ଅତନୁ ଏମନ୍ତ କରି ବଶୁର । ୧୮ ।
ଦେଖ ମ ଲବଳେ ଅତ୍ୟନ୍ତ ପ୍ରବଳ ହୋଇ କରି ଦ୍ୱିଜବରେ ।
ଦେବଜନ ମନ ମତ୍ତହସ୍ତୀ ମତ ବନ୍ଧନ କଲେ ତୃଣରେ । ୧୯ ।

ଦେଖି ସେ ବଦନ ଅଧରେ ମଦନ ପ୍ରହାର କଲା ଟେରଲୀ ।
ସେ ଧନଞ୍ଜୟ ବିନାଶ କରିବାକୁ ବେଗେ କମ୍ପିତ ଡାଳ । ୨୦ ।
କି ଅବା ଏମନ୍ତ ପଦ୍ମବଦନକୁ ପଦ୍ମ ଦେଖି ଚିନ୍ତା କରେ ।
କରି କାରୁଣ୍ୟ ସହିତେ ଅଶ୍ରୁକୁମ୍ଭ ସିଞ୍ଚିଲ ଜଳସ୍ଥଳରେ । ୨୧ ।
ଶିଳାରୋହଣରେ ସୁନ୍ଦରୀ ପଦରେ କର ଦେଲେ ଯାହା ଗୁପ୍ତେ ।
ଚରଣ ଧରି କି ଶରଣ ପଶିଲେ ମଦନକୁ କରି ଭୟେ । ୨୨ ।
ହୋମ ଅନ୍ତେ ତହୁଁ ବନ୍ଧୁ ନମସ୍କାର କଲେ ପ୍ରଦକ୍ଷିଣ କରି ।
ବୋଲନ୍ତି ହେଉଛୁ ମଦନ ତାପକୁ ଆଜହୁଁ ସମିଧ ପରି । ୨୩ ।
ବାଳକ ସ୍ୱଭାବେ ହୋମ ଦେଖି ଭାବେ ଭାବବତୀ ପୂର୍ଣ୍ଣ ହେବେ ।
ଲାଜା ହୋମ ଦେଖି ଲଜ୍ଜା ହୋମ କଲା ଅନୁରାଗ ହୁତବହେ ।୨୪।
ଧ୍ରୁବ ସବୁ ବଚନେ ଏ ନବବଧୂର ପରାଣନାଥ ସରାଗ ।
ନୋହିବ ସପତ୍ନୀ କଉଣସି କାଳେ କ୍ଷଣେ ନୋହିବ ବିୟୋଗ । ୨୫।
ଉଦୁମ୍ବରୀକ ମଣ୍ଡପ ଉପରୁ ଦେନ ଆସ୍ତ ମହାପଥ ।
କେଟକୀ ତନୁ ତା ମଦନକରତ ଅଙ୍ଗକୁ ହୋଇଲା ପ୍ରଭ । ୨୬ ।
ଏଥୁ ଅନନ୍ତରେ ଯାଇ ଅନ୍ତଃପୁରେ ବେନି ଜନେ ଖେଳୁ ଜୂଭ ।
ସୁନ୍ଦରୀ କର ଲାଉନ୍ତେ ଅନୁରାଗେ ଫେଡ଼ ଦେଲା କାନ୍ତ ହସ୍ତ । ୨୭ ।
ଯେମନ୍ତ ବଳୀ ସବଳରେ ଫେଡ଼ଇ ଦୁର୍ଘଟ କପାଟଯନ୍ତ୍ରେ ।
ଦୁର୍ବଳ ଲୋକରେ କୁଞ୍ଚି ବା ହେତୁରେ ଫେଡ଼ଇ ଇତର ମାତ୍ରେ ।୨୮।
ଏମନ୍ତେ ଅବା ନୋହିଲେ ବେଗ ଚନ୍ଦ୍ରକାନ୍ତମଣି ସ୍ତ୍ରୀବାଠାରେ ।
ଝୁରଣ ମାତ୍ରକେ ଦ୍ରବ ହୋଇ ଯାଇ କୋମଳ ରଜନୀକରେ । ୨୯ ।
ସୁନ୍ଦରୀ କରକୁ ବନ୍ଧୁତ ବେଳରେ ନ ପାଇଲେ କାନ୍ତ ଫେଡ଼ ।
ଯେମନ୍ତେ ଖଡ଼ଗ ସମସ୍ତ ଝଣ୍ଡିର ଚୁମ୍ବକରେ ରହେ ଜଡ଼ । ୩୦ ।
ଅଛ ବଳମ୍ବ ଦେଖିଣ ସ୍ୱକୁନ୍ତଳା ମୁଷ୍ଟି ଖଲ କଲା ତାର ।
ବୋଇଲା ଏତ ବଳମ୍ବ କରୁଛନ୍ତି ଧରିଥିବାକୁ ମୋ କର । ୩୧ ।

ଏଥୁ ଅନନ୍ତରେ ପଞ୍ଚାଶୀ ସାତ ବର ବାହାରକୁ ବଳେ ।
ନତ କରନ୍ତି ବହୁତରୂପେ ସ୍ତୁତି ଜଗତେଶ୍ୱର ହେ ସୂର୍ଯ୍ୟ । ୩୨ ।
ତୁମ୍ଭେ ତ ଜାଣ ମଦନ ମନପଣ କରଇ ଯାହା ଯାହାକୁ ।
ଉଚିତ ମାତେ ବନ୍ଧନରେ ବନ୍ଧାଇଲା ତୁମ୍ଭର ପର ଦେବଙ୍କୁ । ୩୩ ।
ଅଶ୍ୱିନାଥଙ୍କ କନ୍ଦରେ ମୁକୁନ୍ଦ ବହିଲେ ଦେବତା ପ୍ରାୟେ ।
ଗୁରୁପତ୍ନୀକି ହରିଲେ ହରିଣାଙ୍କ ଅହଲ୍ୟାକୁ ସୁରପତୟେ । ୩୪ ।
ତୁମ୍ଭେ ତ ସକଳଭୂତ ଅନ୍ତର୍ଗତ ବାରତା ଜାଣ ଗୋସାଇଁ ।
ଅସ୍ତାଚଳ ଭଜ ମହତସ୍ତବକ ଅସ୍ତ ହୁଅ ପର ପାଇଁ । ୩୫ ।
ଏମନ୍ତ ସମୟେ ରବି ଅସ୍ତ ଗଲା ପ୍ରବେଶ ହେଲା ତମିର ।
ସଉତ୍ସୁକ ହୋଇ ଏମନ୍ତ ମନ୍ଦିରେ ମଧୁଶଯ୍ୟା କଲେ ନାରୀ । ୩୬ ।
କାଞ୍ଚନର ସ୍ଥଳୀ ପ୍ରବାଳର ସ୍ତମ୍ଭ ମରକତ ପୈରଶ୍ରେଣୀ ।
ବଇଡୂର୍ଯ୍ୟ ବତା ପୁଷ୍ପରାଗ ପାଟୀ ପଦ୍ମରାଗ ଚୁଅ ଶ୍ରେଣୀ । ୩୭ ।
ମୁକ୍ତାଚୂନରେ ସଉଧ ହୋଇଛି ଉର୍ଦ୍ଧ୍ୱେ ଉଚ୍ଚ ଭିତ୍ତିମାନ ।
ଏମନ୍ତ ଭିତ୍ତିରେ ଲେଖା ହୋଇଅଛି ଏରୂପେ ପିତୁଳିମାନ । ୩୮ ।
କେବଣ ପ୍ରଦେଶେ ହୋଇଛି ରଚନା ଚଉଷଷ୍ଠୀ ବନ୍ଧମାନ ।
କେଉଁ ପ୍ରଦେଶରେ ଲେଖା ହୋଇଅଛି ପାଞ୍ଚାଳୀ ବସ୍ତ୍ରବଧାନ । ୩୯
କାହିଁ ପିତାମହ କାମେ ହୋଇ ମୋହ ଗୋଡାଇଛନ୍ତି ସୁତାକୁ ।
କାହିଁ ବିଶ୍ୱାମିତ୍ର ଯୋଡ କରପଦ୍ମ କହୁଛନ୍ତି ମେନକାକୁ । ୪୦ ।
କେଉଁ ପ୍ରଦେଶେ ସମଦନେ ରାବଣ ରମ୍ଭାକୁ ହରୁଛି ବଳେ ।
କାହିଁ ମାୟାବୀ କୁମିଲ୍ଲପୁର ରମ୍ଭ ଅଛି ଇନ୍ଦୁମତୀ ତୁଳେ । ୪୧ ।
କାହିଁ ଜନାର୍ଦ୍ଦନ ପାଲଟା ବସନ ନିଜ କରେ ଧରିଛନ୍ତି ।
ଗୋପୀମାନଙ୍କୁ ସୂର୍ଯ୍ୟଙ୍କୁ ନମସ୍କାର କର ବୋଲି ବୋଲୁଛନ୍ତି । ୪୨ ।
କେଉଁଠାରେ ବାଳୀ ସେନା ସଙ୍ଗେ ମିଳ କାହିଁ କୁନ୍ତୀ ସୂର୍ଯ୍ୟ ରତ ।
କାହିଁ ସୁଭଦ୍ରା ଧନଞ୍ଜୟ ସେବାକୁ ପୁରଦ୍ୱାରେ ଉପସ୍ଥିତ । ୪୩ ।

ଏମନ୍ତ ମନ୍ଦରେ ନୃପକୁମରକୁ କରାଇଲେ ନେଇ କଞ୍ଜେ ।
ଶ୍ରୀକୃଷ୍ଣ ଚରଣପଦ୍ମ ପ୍ରଦକ୍ଷିଣ ଲୋକନାଥ ଦାସ ଭଞ୍ଜେ । ୪୪ ।

## ତ୍ରୟୋଦଶ ଛାନ୍ଦ ।

ରାଗ ପଞ୍ଚମବସନ୍ତ । କଳସା ବାଣୀ ।

ଏଥୁଅନ୍ତେ ଶୁଣ ଜନେ ମଧୁଶଯ୍ୟା ବସ୍ତି । କାମକେଳି ସଦନେ ସୁରତି କଳାନିଧି । ବିବିଧ ସୁରତ ମନେ କରୁଛି ବିଗ୍ରହ । ରଖିଛି ଶ୍ରବଣଦେଶେ ଅବଧାନ ଢାର । ୧ ।

ନିମିଷକ ମଣୁଅଛି ସହସ୍ର ବରଷ । ବରଷୁଛି ହୃଦୟରେ ମଦନ ହୁତାଶ । ଯାଉଅଛି ଚେତନା ମଦନଜଳେ ବୁଡ଼ି । କହୁଅଛି ମଦନ-ନୃପକୁ କର ଯୋଡ଼ି । ୨ ।

କ୍ଷଣେ ରହି କ୍ଷଣେ ଦେଖେ କ୍ଷପାକର ମୁଖ । ଅଣରଣେ ମାରଣେ ଲଭିବୁ କେତେ ସୁଖ । ପରମଅନନ୍ଦେ ସୁଖେ ହେଉଛି ମଗନ । ଅଦ-ଭୁତେ ପ୍ରଫୁଲ୍ଲ ହେଉଛି ଅପଘନ । ୩ ।

ଏଥୁ ଅନ୍ତେ ଶୁଣ ଜନେ ଅପୂରୁବ ରସ । ନୃପବରସୁତାକୁ କରନ୍ତି ଦିବ୍ୟବେଶ । ନିବିବନ୍ଧ ନିବଡ଼େ ବାନ୍ଧନ୍ତେ ବମ୍ଭାଧିଶ୍ରୀ । ପାରୁଣରେ ଥିଲା ତା ଯୌବଣ ସନ୍ଧିଚିହ୍ନ । ୪ ।

ମନେ ହସି ବୋଇଲା ରେ କନକରମ୍ଭୋରୁ । କେତେବେଳ କଥାକୁ ଯତନ କେତେ କରୁ । ଏକ ଅଳୀ ମୁଖ ତୋଳ ବୋଇଲା ତାହାକୁ । ଅଛ କର୍ପା ଶୂନ୍ୟ ନାହିଁ କାହାର ମୁଖକୁ । ୫ ।

ସୁବେଶେ ଏମନ୍ତ ଶୋଭି ଲଭିଲା ଯୁବତୀ । ରୂପବତୀ ହୋଇଲା କି ମଦନଦମ୍ପତି । ସୁବେଶ କରାଇ ଏଣୀଶିଶୁନୟନାକୁ । ଅଣିଁ ଅଳୀ ମଦନଉତ୍ସବସଦନକୁ । ୬ ।

ପଦ୍ମଶ୍ରେ ପକାଇ ଦର୍ଶ୍ରେ ରହିଲ ସୁନ୍ଦରୀ । ତାହା ଦେଖି ହସି
କହେ ଏକ ସହଚରୀ । କାନ୍ତକେଳିସଦନ ପାରୁଣେ ହେବା ଜାଣି ।
ବନ୍ଧୁ ନାହିଁ ଗୁହାଉଛୁ ଅମ୍ଭଙ୍କୁ ମିତଣି ।

ମନୋଜ ବଶରେ ତୋର ଏ ବାହୁବଲ୍ଲୀ । କାହା କଣ୍ଠେ
ଦେବୁ ଚମ୍ପାମାଳା ପ୍ରାପ୍ତେ କର । ବାଳକାଳୁଁ ରଜନୀ ଦିବସ ଅଙ୍କେ
କର । କଥାପଦକୁ ଲାଜକ ନୋହନ୍ତୁ ସୁନ୍ଦର । ୮

ଭଲେ ଆଜ ଚତୁରଷ ନାହିଁ ଯାହା ଭୁଲେ । ନ କରିବା କ-
ଥାହିଁ କରିବୁ ତାଙ୍କ ବୋଲେ । କିମ୍ପେ ଅମ୍ଭର ପାଶ ନ ଛାଡ଼ୁ
ସୁକେଶି । କାହା ଅଙ୍କେ ଅଙ୍ଗ ଦଶି ନେବୁ ମୃଗଦୃଶି । ୯ ।

ଅମ୍ଭ ପଶେ ନ ଚେତୁଛୁ ବଦନସରୋଜ । ସବୁ ଲାଜ ଜାଣିବା
ଭୂମ୍ଭର ସଖୀ ଅଜ । ଭୁ ଅବା ବୋଲିବୁ ଥିବୁଁ ସଦନ ଅନ୍ତରେ ।
ଜାଣିବୁଁ ବାଜେଣି ବଳା ହଂସକ ଧ୍ୱନିରେ । ୧୦ ।

ଲାଜ ପାଇଁ ମନଗତ ଅତ ମନେ ଗୁଳେ । ନ ବଳଇ ଦେହଳ
ଅଳୀଙ୍କ ବନ୍ଧୁ ବୋଲେ । ତାହା ଦେଖି ଏକ ସଖି ବୋଲେ ଅର-
କନ୍ତ । ନ ଅସୁଛୁ ଚଉଠ ସଜନୀ ମାନସକୁ । ୧୧ ।

ଗୃହ ସହଚରୀ ଅମ୍ଭେ ଯିବା ଗୋ ନେଉଛି । ଗଲେ କାନ୍ତ ଧର
ନେବେ କଣ୍ଠେ ଗୋ ପାଶୋଟ । ଏହି ଅଦରଭ୍ରଦରହାସୀ କର ଅଣା
ନ ଯାଉଛି ବକ୍ଷର ପାଶକୁ ମୃଗଦୃଶା । ୧୨ ।

ଏତେ କହିଁ କହନ୍ତା ଦେହଳ ବଳ ସମା । ତାହା ଶୁଣି ହସି କହେ
ଏକ ପ୍ରିୟତମା । ଅମ୍ଭ ସଖୀ ହୋଇଛୁ କ ଅମ୍ଭ ବୋଲେ ଯିବ । ସବୁ
ଦିନେ ନ ଥାଇ ସବୁର ସବୁ ଲବ । ୧୩ ।

ଏବଚନେ ବୁଡନ୍ତେ ସେ ଲଜ୍ଜାଜଳଧିର । ଅନୁଗ୍ରେ ନାବେ ହେଲା
କାମ କର୍ଣ୍ଣଧାର । ଚତୁରବଚନେ ତତ୍ତ୍ୱ ଜାଣି କୁତୁହଳେ । ଘେନି
ଦେଲେ ଦେହଳ ବଳାଇଁ ତାଙ୍କୁ ବଳେ । ୧୪ ।

ଦ୍ୱାର ପାରୁଣରେ ରହୁ ଏକ ସହଚରୀ । ବୋଇଲା ହେ ଅବନୀ-
ତିଲକ ଦଣ୍ଡଧାରୀ । ଭେଟିଲା ଭ୍ରମର ତୁମ୍ଭେ ରସିକ ପୁରୁଷ । ସଖୀ
ଅଟ୍ଟ ନବୀନ ଶିରୀଷସୁମନସ । ୧୫ ।

ରସ ରଖି ରସ ଭୋଗ କର ଅନାତୁରେ । କ୍ଷୁଧାବନ୍ତ ହୋଇଲେ
ନ ଭୁଞ୍ଜେ ବେନି କରେ । ରସିକରତନ ତୁମ୍ଭେ ଅବନୀଈଶ୍ୱର ।
କୁଳବତୀ ନବୀନ ଯୁବତୀ ସଖୀ ମୋର । ୧୬ ।

ସହଜେ ହୋଇଲା ଏ ଯେ ଅପରାଧ ସୀମା । ନ କଲା କଥାହିଁ
କଲା କର କର କ୍ଷମା । ଏତେ କହି କହିଲା ସଜନୀ ଶ୍ରବଣରେ । କାନ୍ତ
ରୂପ ଦେଖି ସଖୀ ନୋହିବୁ କାତର । ୧୭ ।

ଦେଖ ମହାଦ୍ରୁମ ପ୍ରଭଞ୍ଜନ ମରୁତକୁ । କ୍ଷମ କରୁ ପାରଇ କୁସୁମ-
ଲତିକାକୁ । ଅତି ଲଜ୍ଜା କ କରୁ ନୃପତିତନୁଜା । କେଉଁଠାରେ
ନାରୀଙ୍କ ଭୂଷଣ ନୋହେ ଲଜ୍ଜା । ୧୮ ।

ଯୂଥବଣାଏଣାକ୍ଷୀ ସମ୍ଭ୍ରମେ ଏତେ କହି । ପିଠିଆଇ ଥିଲେ
ସକଳ ପ୍ରାଣସଖୀ । ଏକା ଦେଖି ବନିତା ବଦନ ନରପତି । ଦରିଦ୍ର
ପାଇଲା କିବା କୁବେରସମ୍ପତ୍ତି । ୧୯ ।

ବେଗେ ଉଠି ପାଶେଟି ଧଇଲେ ତାର କର । ନେଇଟି ବସିଲେ
ଯାଇ ପଲଙ୍କ ଉପର । ବସାଇଲେ ନେଇ ତାଙ୍କୁ ଗୃହ ସମ୍ମୁଖରେ ।
ବସାଇଲେ ଅତି ତୁଙ୍ଗ ଜାନୁର ଉପରେ । ୨୦ ।

ତେତେବେଳେ କି ହେଉଛି ସୁନ୍ଦରୀର ମନ । କାନନ ବିହଙ୍ଗେ
କି ବା ପଡିଲା ବନ୍ଧନ । କାମଣରେ କାତରତା ହେଉଛି ବାଳିକା ।
ମନ୍ଦବାତେ କମ୍ପୁଛି କି କୁସୁମଲତିକା । ୨୧ ।

କାତରତା ଦେଖିଣ ତା ରସିକ ନାଗର । ଗୃହ୍ନିଅଇ କହନ୍ତି ଚିବୁ-
କେ ଦେଇ କର । ହସି ଯାଉଅଛି ସଖୀ ମଦନ ନଗର । ଜାନୁ ରମ୍ଭା
ରେଳ:ରେ ବସାଇ ପାରି କର । ୨୨ ।

ମଦନସୁଠାଣ ସଖି ଦହୁଛ ଦେହକୁ । ଜାଣ ଭାଳ ଉରଜ ଅମୃତ-
କଲଶକୁ । ଦଶନବଣିଖ ବାଣେ ହୋଇଛୁ ମୂର୍ଚ୍ଛିତ । ସିଞ୍ଚିଲେ ବଚନା-
ମୃତ ରହିବ ଜୀବତ । ୧୩ ।

କହିବାକୁ ବଚନ ନଇଲା କହୁଁ କହୁଁ । ପାପ ଥାଉ ଅଧାର ହୋ-
ଇଲା ଖୁହୁଁ ଖୁହୁଁ । ଗୃହ ଛାଡ ଉଠିଲେ ଲଗାଇ ଉରେ ସ୍ତନ । ସୁନ୍ଦର
ବଦନେ ଚାରୁ ଦଅନ୍ତେ ଚୁମ୍ବନ । ୧୪ ।

ମୃଦିଲା ମଦନକେଶା ଅଧର ନୟନ । ଚନ୍ଦ୍ର ଦେଖି ମୁଦ୍ରିତ କ
ହୋଇଲା ନଳିନ । ଫେଡନ୍ତେ ନୀବର ନେଶକାର ମୀବୀଗ୍ରନ୍ଥି । ଗାଢ଼
କଭ କାନ୍ତ କର ଧଇଲା କମ୍ପୋଷ୍ଠୀ । ୧୫ ।

କେତେବେଳ ରହିବ ସେ ଅବଳା ବଳରେ । ମତ୍ତଗଜ ବାନ୍ଧି
କି ହୁଏ ମୃଣାଳରେ । ମାଡ଼ି ଫେଡ଼ି ବସନ ରଖନ୍ତେ ଖଣ୍ଡେ ଦୂରେ ।
ଅପସରି ଗଲା ଲଜ୍ଜା ସେହି ସଙ୍ଗତରେ । ୧୬ ।

କହୁଥିଲା ଏକାଳେ ଧିବାର ଅସୁନ୍ଦର । ଯେଣୁକର ମୁ କୁଳ-
ପାଳକା ଅଳଙ୍କାର । ଏମନ୍ତେ ବା କେମନ୍ତେ ପାଉବେ ସେହୁ ରହି ।
ବସନ କହିଲେ ଯା ଶରଣ ଅନ ନାହିଁ । ୧୭ ।

ଏଥିଅନ୍ତେ ନାନାବନ୍ଧେ କରନ୍ତେ ଶୃଙ୍ଗାର । କଳାକୁ ରସିକ ଯହିଁ
ଯାହା କଉବାର । ସେକାଳେ ନାଗରବର କହିବା ଛୁଟିକ । ଦେଖି-
ଛନ୍ତି ଭାଗ୍ୟବନ୍ତ ନାଗର ନାୟକ । ୧୮ ।

ସେ ଭବ ଜାଣନ୍ତି ସେହି ଅନୁଭବମାନେ । ସେହି କହିବାକୁ କ୍ଷମ
ନୁହନ୍ତି ବଚନେ । ଚୁମ୍ବ ଦେଲା ବେଳେ ବମ୍ବାଧରୀ ବମ୍ବାଧରେ । ନର-
ଖିଲ ବନ୍ଧର ସମ୍ମୁଖେ ମୁଖ ଧୀରେ । ୧୯ ।

ଲେଖନ୍ତେ ପୃଥୁଳସ୍ତନେ ତୀକ୍ଷ୍ଣ ନଖରେଖା । ଲକ୍ଷି ବୋଲି ଚମକି
ପଡିଲ ଚନ୍ଦ୍ରରେଖା । ଖୋଲନ୍ତେ ଅଙ୍ଗରୁ ଶ୍ରେଣୀ ରମଣୀରତନ । ମହା-
ସୁଖ ପାଇ ମୁଦେ ଅଧୀରେ ନୟନ । ୨୦ ।

ବଶ୍ୟରନ୍ତି ମନସିଜ ସୁଖ ଏତେ ରସ । ଏହା ଛଡ଼ ମୂଢ଼ ; ଦେବେ ପିବନ୍ତି ପୀୟୂଷ । ପୁଣ ପୁଣ ବାଳା ସେହି ରସ ଅସ୍ୱାଦନେ । ବଶ୍ୟରଇ ସ୍ୱର୍ଗ୍ୟଭାଜ ବ୍ରହ୍ମଶ୍ୟରମାନେ । ୩୧ ।

ପୁଣ ନନ୍ଦା କରଇ ବନଗା ବଧାଗାଙ୍କୁ । ଋଚଲା କପାଇ ଆଉ ଦଶପୂମାନଙ୍କୁ । ପରରମ୍ଭ କର କାମମଦେ ହୋଇ ଜ୍ଞାନ । ପାସୋ-ଛନ୍ତି ବମ୍ଭାଧଣ୍ଡ ଛଡ଼ବା ବଧାନ । ୩୨ ।

କ୍ଷୀରଦ୍ଧି ମନ୍ଥନେ କାମ ନ ପାଇଣ ବନ୍ତ୍ର । ଦବା ବାଲା ଲାବଣ୍ୟ-ଜଳଧି ମନ୍ଥନ୍ତ୍ର । ଉପୁଜୁନ୍ତି ତହିଁ ଯେତେ ଯେତେ ରସମାନ । ଲେଶ ପାଇ ନର୍ବାଣ ଛଡ଼ନ୍ତି ମୁନି ମନ । ୩୩ ।

ବାଜେଣି ବଳୟ ହଂସ ରଟନ୍ତି ଉଚ୍ଚରେ । ବାଜେ କି ଜୟ ଦୁନ୍ଦୁଭି ମଦନଯୁଦ୍ଧରେ । ନାଗର ନାୟକ ରସ ଅସ୍ୱାଦନେ ମାତ । କେଉଁ କଥା ନ କରନ୍ତି କେଉଁ କୁଳବନ୍ତୀ । ୩୪ ।

ଅଧ୍ୟନ୍ତ ବଚଷ ଏ ମଦନ ରସକଳା । ଅନୁରବ ବସ୍ତାନେ ଜାଣନ୍ତି ଯାହା ବାଲା । ନ କରବା କଥାହିଁ କରନ୍ତି କାମଭୋଳେ । କରବା-ର ନ କରନ୍ତି ବଳ୍ପରି ବୋଲଲେ । ୩୫ ।

ଯଦି ଜାଣିଥିଲେ ସବୁ କାମଶାସ୍ତ୍ର ବଧି । ସେହି କଥାମାନ ଅନୁ-ଭବେ କଲେ ସିଦ୍ଧି । ଦୁହେଁ ଦୁହିଙ୍କର ହରଇଣ ଜ୍ଞାନ ବୁଦ୍ଧି । ବୋଲନ୍ତି ଏ ବସ୍ତୁ ରଖ ଧାଇ କାମ ବସ୍ତୁ ଯେ । ୩୬ ।

ଏଥୁଅନ୍ତେ ଶୁଣ ହେ ରସିକ ରସସାର । ନବ ଅନୁଭବ ସିନା ନବ ଯୁବତୀର । ମଣ୍ଡପରେ ମଦନସମରେ ବାଲା ହାର । ସମର୍ପିଲା ପଦେ ବର ନୃପଚନ୍ଦ୍ରମାଂସ୍ତୀ । ୩୭ ।

ଜାଣି ତା ରସିକ ଅବଜ୍ଞାଇଣ ଉରକୁ । ବସାଇଲା ଜାନୁରେ ଯୁବତୀରତନକୁ । ଜଳଜଲୋଚନା ଜ୍ଞାନ ପାଇଲା ସେ କାଳେ । ବସନବସ୍ତାନେ ମୁଁ ବସିଛି କାନ୍ତ କୋଳେ । ୩୮ ।

କନକପ୍ରଦୀପ ଜଳୁଅଛି ପାଲୁଣରେ । ତାହା ଦେଖି ଭୃତ୍ୟେ ସେ
ଲଜ୍ଜାଜଳଧିରେ । ବର୍ଣ୍ଣିବଇ ଏବେ ମନ ସୁମନସଙ୍କଳ୍ପ । କୁଳ-
କନ୍ୟାମାନଙ୍କ କରଇ ଏତେ ରୂପ । ୩୯ ।

ଜୀବନରୁ ଅଧିକ ଲଜ୍ଜାକୁ ଦୂର କର । କାହା ଭୁଲେ କେଉଁ
କଥା କୁହ କ କହୁ । ନବୋଢ଼ାଲ୍ଲ କୁସୁମ ପ୍ରହାର ପ୍ରଦୀପକୁ । ନ
ପାରନ୍ତି ନିବାର ତାଙ୍କ ଆଲୋକକୁ । ୪୦ ।

ଶ୍ରୀଖଣ୍ଡରଜକୁ ପଡ ନେଇକୁ ପକାଇ । ପଲ୍ଲେ ମାଖି ବାନ୍ଧନ୍ତି
ହୃଦରେ କର ଦେଇ । ଫୁଲ ଲାଗି ଜଳନ୍ତେ ଜାଣିଲ୍ଲ ଷଡ଼ମାନ ।
ମନେ ମନେ ବର୍ଣ୍ଣଇ ନାଗେଶ୍ୱରତନ । ୪୧ ।

ପଲଙ୍କରେ ଏମାନ ଦେଖିଣ ସହଚରୀ । ପତ୍ନୀବେ ମୋତେ ପରି-
ହାସମାନ କରି । ଦଣ୍ଡୀ ଏ ସୁନ୍ଦର ତୋ ଅଙ୍ଗେ କ କ ଚଢି । କ କରି
କର୍ଣ୍ଣହିଁ କ ତାଙ୍କ ସହାସ ବଦନ । ୪୨ ।

ହୃଦୟଶାନ୍ତରେ ବାଳା ହୋଇ ଅଣକଡ । ଚନ୍ଦ୍ରା କରେ ଚନ୍ଦ୍ରମ
ଚନ୍ଦନ ଚନ୍ଦ୍ର ବାତ । ଜାଣି ତା ସୁବୋଧ ପଢ ବସାଇ ଅଙ୍କରେ ।
ଶ୍ରମସ୍ୱେଦ ହରନ୍ତି କେତକୀବ୍ୟଜନରେ । ୪୩ ।

ଏଥୁ ଅନ୍ତେ ଶୁଣ ତତେ ଅପୂର୍ବତ ଭାବ । ( ବିରୋଧାଭାସ )
ଅଶୃଙ୍ଖ ହୋଇଲା ଦଗ ରଜ ଶୃଙ୍ଗଭାବ । ଅତ ଜଡ଼ ସୁଗୁଣ ହୋଇ-
ଲେ ସିନ୍ଧୁରବ । ମିଏ ବନ୍ଧୁ ମିଏ ଦେଖି ଦୁଃଖୀ କଇରବ । ୪୪ ।

ତାହା ଦେଖି ପ୍ରଭାତ ହୋଇଲା ବୋଲି ଜାଣି । ପ୍ରାଣନାଥ କୋ-
ଳରୁ ଉଠିଲ୍ଲ ସୁଲକ୍ଷଣୀ । ଜାଣି ତା ରସିକ ତାକୁ ଆଲିଙ୍ଗନ କଲା ।
କାଳକ ଅଲଭ୍ୟ କଥା କ୍ଷଣକେ ଲଭିଲା । ୪୫ ।

ଯେତେବେଳେ କାନ୍ତ ପାଶୁଁ ଅସୁଛି ସୁନ୍ଦରୁ । ମଧୁକାଳ ଗଲା କ
କୁସୁମବନକାରୁ । ଲୁଟିଛି କଣ୍ଠରୁ ହାର ଫିଟିଛି କବରୀ । କୁଚ କପୋ-
ଳରୁ କୃଣ ହୋଇଛି ମକରୀ । ୪୬ ।

ଖସିଛୁ କୁସୁମ ବେଣୁଁ ଘସୁଛୁ ଲୋଚନ । ଭଲେ ନାହିଁ ସ୍ଥଳେ ନେତ୍ରେ ହେନୁର ଅଞ୍ଜନ । ଚଳ ନ ପାରଇ ବାଳା ଅଙ୍ଗ ଅବଶରୁ । ମୁଦ୍ରିତ ହେଉଛୁ ନେତ୍ର ଉନ୍ନିଦ୍ରବଶରୁ । ୪୭ ।

ଦଣେ ସ୍ୱେଦବନ୍ଦୁ ଯାହା ସୁନ୍ଦରୀ ବଦନେ । ଦେଖି ଜ୍ଞାନ ହେଉଛୁ ଏମନ୍ତ ମୋର ମନେ । ଲୁଚ ଶମ୍ଭୁ ଉପୁଠାରୁ ନେଇ ମୋତିହାର । ଚନ୍ଦ୍ରମୁଖୀ ମିତ୍ରକୁ କ ଦେଲା ପଞ୍ଚଶର । ୪୮ ।

ମୃଗ-ପୋତ ଚ୍ଛଳଇ ଅଳପ ଚଳ ଚଳ । ଏହି ସମୟରେ ଦରଶନ କଲେ ଆଳୀ । ଦେଖି ସଖୀ ଦଳାପଳୁଦ୍ଦାର ଏ ବେଶ । ସବସଖୀ ହୋଇଲେ ଅଳପ ହସ ହସ । ୪୯ ।

ଏକ ସଖୀ ବୋଇଲା ରେ ନାଗରୀରତନ । ଉନ୍ନିଦ୍ର ପର୍ଯ୍ୟେ ଦଣେ ସୁରଙ୍ଗ ଲୋଚନ । ଏ ତୋର ଶ୍ରୀଅଙ୍ଗ ବାସ କର୍ପୂର ଚନ୍ଦନ । ପିଙ୍ଗ-ଙ୍ଗ ପର୍ଯ୍ୟେ ଦଣେ ପଞ୍ଚଇନ୍ଦ୍ରିୟ । ୫୦ ।

ଆମ୍ଭେ ପଚାରିଲେ ସଖୀ କଥାଏ ନ କହୁ । ଏମାନ ଅଙ୍ଗରୁ ତୋର ଅଇଲା ଗୋ କାହୁଁ । ତୁମ୍ଭେ ବଡ ଲୁଚାଇଲେ କ ହେବ ସୁମୁଖୀ । ସବୁ ରସ କହୁଛୁ ଦେଖିଛୁ ଯେଉଁ ଆଖି । ୫୧ ।

ନ ଦେବ ବଦନ କର୍ପୂର ହୋଇଛୁ ମଉନ । ଏଣିକି ଦୁର୍ଲ୍ଲଭ ହେବ ପରି ଦରଶନ । ଏହିରୂପେ କହି ନାନା ରଙ୍ଗ ପରିହାସ । ସୁନ୍ଦରୀକ ଘେନ ଅନ୍ତଃପୁରେ ପରବେଶ । ୫୨ ।

ଏବେ ଶୁଣ ରସିକପୁରୁଷ ରସସାର । ସୁରତସଦନରୁ ବାହାର ନରେଶଙ୍କ । ଲୁଚାଉଛୁ କ୍ଷତମାନ ଅତି ଯତ୍ନ କରି । ଛାରସ୍ନେହ ଯେମନ୍ତ ଲଗାଇଥାନ୍ତି ନାରୀ । ୫୩ ।

ବୋଇଲାକ ଦେଖି ଏକ ପରିହାସୀ ନର । ମୁଲୁରେ ନ ଗୃହି କର୍ପୂର ହୋଇଲ ବାହାର । ମାଳଶାମନ୍ଦରେ ଯାଇ ହେଲେ ପରବେଶ । ଆର ଛନ୍ଦେ କହିବା ଏ ଅନ୍ତେ ଯେଉଁ ରସ । ୫୪ ।

ଶ୍ରୀକଣ୍ଠାଭରଣ ଉଦସନ୍ତାପ ବର୍ଜାଣ । କମଳାକ୍ଷ ପାଦେ ଚିତ୍ତ ଲୋକନାଥ ଦାସ । ବ୍ରହ୍ମା ବିଷ୍ଣୁ ଶିବ ଶିବା ଶଶୀ ଗଙ୍ଗା ରବି । ଗଣେଶଙ୍କୁ ପଦ ଅଷ୍ଟପର୍ଥେ ଏ ସମ୍ପୂର୍ଣ୍ଣ । ୩୫ ।

——:୦:——

## ଚତୁର୍ଦ୍ଦଶ ଛାନ୍ଦ ।

### ରାଗ ମଙ୍ଗଳଗୁର୍ଜ୍ଜରୀ ।

ରତ୍ନମାଳା ନୃପ ବୁଦ୍ଧିସାଗର ମନ୍ତ୍ରୀକି ।
କହେ କହ ଯାଇ ପୁଷ୍ପଧନୁ ନୃପତିଙ୍କ ହେ । ୧ ।
କହିବ ଚତୁର୍ଥୀ ଆମ୍ଭ ନଗରେ ହୋଇବ ।
ଜନନୀ ଦେଖିବେ ସେହି ତାହାଙ୍କ ଉତ୍ସବ ଯେ । ୨ ।
ଶୁଣି ମନ୍ତ୍ରୀ ନୃପତି ବଚନ ଶିରେ ଧରି ।
କହିଲା ସେ ନୃପଙ୍କୁ ବସନ୍ତ ଭାବ କରି ହେ । ୩ ।
ଶୁଣି ସନମତି କରି ରସବତୀକାନ୍ତ ।
ରାଣୀଙ୍କି କହିଲେ ଯାଇ ସକଳ ବୃତ୍ତାନ୍ତ ହେ । ୪ ।
କହୁଁ କହୁଁ ଅଶ୍ରୁରେ ପୂରିଲା ଦେନି ଆଖି ।
ମହାଦେଈ ଅଭୁଲକୁ ହୃଦୟ ତା ସାକ୍ଷୀ ହେ । ୫ ।
ଜଉତୁକ କରି ଦେଇଥିଲେ ଯାହା ଯାହା ।
ପୁରୋହିତ ଗୋଚରେ ଗଣାଇ ଦେଲେ ତାହା ହେ । ୬ ।
ଯବେ ମନ ଭ୍ରମଣରେ ଚାହିଁ ସମୀରଣ ।
ତରଙ୍ଗେ କୁରଙ୍ଗନେତ୍ରା ନୟନ ସମାନ ହେ । ୭ ।
ଡେଇବାରେ ହଂସ ବିକ୍ରମରେ ମୃଗରାଜ ।
ଉଚ୍ଚ ସଙ୍ଗ ପୃଥୁଳ ନିର୍ଦ୍ଦେଶୀ ମହାତେଜ ହେ । ୮ ।
ସ୍ୱସ୍ତାନେ ଚନ୍ଦ୍ର ସଦୃଶ ସଙ୍କୋଚନେ କୂର୍ମ ।
ପାଲଟେନ୍ଦୁ ମୁଖ ବାହାରିବା ବାଣ ସମ ହେ । ୯ ।

ସର୍ବଗୁଣେ ପୂର୍ଣ୍ଣ ବେଶ ବସ୍ତ୍ରସେ ପୂଜଇ ।
ଏହିରୂପେ ଦେଲେ ଇନ୍ଦ୍ର ବଶ ଶସ୍ତ୍ର ସାଢ ହେ । ୧୦ ।
ହିମାଚଳ ପ୍ରଭୃତି ମଦାନ୍ଧ କରୀନ୍ଦ୍ର ।
ସହସ୍ରେକ ଦେଲା ଉସଥରଙ୍ଗ ନରେନ୍ଦ୍ର ହେ । ୧୧ ।
ବଜ୍ର ଛତ୍ର ଚନ୍ଦ୍ରଧ୍ୱଜ ଖଡ୍ଗ ପଢ଼ ଶଏ ।
ଖଡଗ ଫଳକ ସଙ୍ଗେ ଦେଲା ମହାସଂସ୍ତେ । ୧୨ ।
ଲକ୍ଷ୍ମୀଦତ୍ତ ସୁଗନ୍ଧ କନକ ପଦ୍ମମାଳା ।
ମହାଧନ କୋଟିବସ୍ତ୍ର କୋଷ୍ଠରହି ଦେଲା ହେ । ୧୩ ।
ସମାନ ସୁନ୍ଦର କନ୍ୟ ଅଳଙ୍କାରେ ଭୂଷ ।
ଏରୂପରେ ଦେଲା ସେ ସହସ୍ରେ ପରିବାରୀ ହେ । ୧୪ ।
କାବ୍ୟପଢ଼ା କର ଦେଲା ସହସ୍ରେକ ଶୁକ ।
ଶୃଙ୍ଗାରଶତ ଦେଲା ସେ ଯେ କଥାକୁହା ପିକ ହେ । ୧୫ ।
ଦେଲା ଶ୍ୱେତଧବ ଶାଖାମୃଗରୁ ପଞ୍ଚାଶ ।
ଘୋଷମନା କସ୍ତୂରିକା ଦେଲାକ ଦୁଇଶ ହେ । ୧୬ ।
ବହଙ୍ଗମଠାରୁ ହେମ ଗଜ ରହି ଯାଏ ।
ଛଅ ଘୋଡ଼ି ନ ରହିଲା ସେ ବେଗେ କଥାଏ ଯେ । ୧୭ ।
ଶୂନ୍ୟ କରି ସମସ୍ତ ଭଣ୍ଡାର ନିବେଦନ ।
ସର୍ବ ଦେଇ କହିଲା ସେ ରାଜାଧିରାଜନ ହେ । ୧୮ ।
ତୁମ୍ଭେ ମହାରାଜା ମୁ ଦେବାକୁ କଅ ପାଏ ।
ସ୍ଥା ଦେଇ ସମର୍ପି ହେଉଛି ଏବେ ମାଏ ହେ । ୧୯ ।
ସେ ବୋଲନ୍ତି ଅଧିକ କି କହିବୁଁ ତୁମ୍ଭଙ୍କୁ ।
ସ୍ତ୍ରୀରତ୍ନ ଦେଇ ତୁମ୍ଭେ କିଣିଲ ଅମ୍ଭଙ୍କୁ ହେ । ୨୦ ।
ମାଧାତାରୁ କୁମାରୀ ମେଲାଣି ହେବାବେଳେ ।
ସିନ୍ଦୂର କର୍ଦ୍ଦମ ହୋଇଲା ଅଶ୍ରୁଜଳେ ହେ । ୨୧ ।

ଯେତେବେଳେ ସୁନ୍ଦରୀ ହାବୋଲା ବନ୍ଦେ କଲ୍ୟ ।
ସେ ସଦନୁ ଲକ୍ଷ୍ମୀ କ ବାହାର ହୋଇ ଗଲ୍ୟ ଯେ । ୨୨ ।
ଯେଣି ଗଲ୍ୟ ଘଃସ୍ତ୍ରନା ସମ୍ପାର ସକଳ ।
ଦେଇ ଗଲ୍ୟ ସଜଳ ଲୋଚନେ ଅଶ୍ରୁଜଳ ଯେ । ୨୩ ।
ନୃପତିକୁମର  ସଙ୍ଗେ ଯେଣ୍ଣ ସଚିବକୁ ।
ସେ ସଙ୍ଗେ ଚଳିଲେ ରତ୍ନମାଳା କଣ୍ଠକକୁ ହେ । ୨୪ ।
ଦୁଇ ଦନ ଦୁଇ ରାତ୍ର କଲେ ପଥେ ବାସ ।
ତୃତୀୟ ପ୍ରଭାତେ ହେଲେ ନଗ୍ରରେ ପ୍ରବେଶ ହେ । ୨୫ ।
କି କହିବା ସେ ପ୍ରଭାତ ମହିମା ଅଲକ୍ଷ୍ୟ ।
ଦୁର୍ଜନ ପରାୟେ ବଧୂ ପଦରେ ବିମୁଖ ଯେ । ୨୬ ।
ସଜ୍ଜନ ପରାୟେ ସେ ଯେ  ମିହିରଗଧର ।
ତସ୍କାର ପ୍ରାୟେ ଲୁଚି ବଡିଣ ଅମ୍ବର ଯେ । ୨୭ ।
ସରସୀ ପରାୟେ ଶୋଭା ସାରଙ୍ଗଧ୍ୱନିରେ ।
ଯୋଗୀ ପ୍ରାୟେ ଚମଦ୍ଧ୍ୟାଗୀ ସକଳ ଭୁବରେ ଯେ । ୨୮ ।
କାମିନୀ ପରାୟେ କାନ୍ତ ଉତ୍ସଳେ ରଞ୍ଜିତା ।
ନାଗର ପରାୟେ ପ୍ରିୟା ପ୍ରବୋଧ କରନ୍ତା ହେ । ୨୯ ।
ସ୍ୱଚ୍ଛ ନଦୀ ଜଳ ପ୍ରାୟେ ଅତ୍ୟନ୍ତ ଶୀତଳ ।
ସ୍ୱର୍ଗ ପ୍ରାୟେ ଶୋଭା ଯହିଁ ସୁମନପଟଳ ହେ  ୩୦ ।
ନିଗମ ପରାୟେ ଦ୍ୱିଜ ବଚନେ ପ୍ରକାଶ
ତରଣୀ ପ୍ରକାଶ ଶୋଭା ସରତ ସଦୃଶ ହେ । ୩୧ ।
ସମୀର ପରାୟେ ମନ୍ଦ ଅତ୍ରପୂ ଶରୀର ।
ହର ଚନ୍ଦ୍ରକାନ୍ତି କାରଣରୁ ମୁନିବର ହେ । ୩୨ ।
ପଦ୍ମନୀ ଅଞ୍ଜନକର ହେତୁରେ ଶୀହର ।
ଚୋର ପ୍ରାୟେ ଦଣେ ହର ଦ୍ୱିଜରାଜ ଶିରୀ ହେ । ୩୩ ।

ଦଣ୍ଡୁ ଅସି ପ୍ରାୟେ ଜାରଯୁବତୀହୃଦ .
ଅନେକ ଗୁଣେ ଶୋଭିତ ହେବୁ ବୀଣାନାଦ ହେ । ୩୪ ।

ସୁନୃପ ପରାୟେ ଚନ୍ଦ୍ର ଆନନ୍ଦକାରକ ।
ମଧୁ ପ୍ରାୟେ ପୁଣ୍ୟଜନ ଆନନ୍ଦଦାୟକ ହେ । ୩୫ ।
ଅଶ୍ୱଥାମା ପ୍ରାୟେ ଦ୍ରୋଣଉପ୍ତ ଦୁଃଖ ଜାତ ।
ପାଣ୍ଡବ ଖେଦନେ ଶୋଭା ଅଭିମନ୍ୟୁ ହତ ହେ । ୩୬ ।
ଯେଉଁ କାଳେ ଚନ୍ଦ୍ରା କଲେ ବିଯୋଗୀନିକର ।
ଦ୍ୱିଜପଦଧର ମଧୁପର ପ୍ରିୟ ଧର ହେ । ୩୭ ।
ଶୁଭ ଲଗ୍ନ ବେଳରେ ହୋଇଲେ ପରବେଶ ।
କ ବର୍ଣ୍ଣିବା ସେ ନଗର ଜନଙ୍କ ହରଷ ହେ । ୩୮ ।
କନ୍ୟା ଯେନ କୁମର ପ୍ରବେଶ ଏହା ଶୁଣି ।
ନୟନେ କଙ୍କଣ ଖଞ୍ଜି ଧାଇଲେ କାମିନୀ ହେ । ୩୯ ।
ସ୍ୱର ଆଗମନେ ଯେହ୍ନେ ଅନିବାର ନାଗ ।
ସେହିପରି ଲାଜ ଜ୍ଞାନ ହୋଇଲା ବିଯୋଗ ହେ । ୪୦ ।
ବେଶ ହେଉଥିଲା ଯେଉଁ ନାରୀଅଲଙ୍କାର ।
ଅଞ୍ଜନ ବୋଲି ରଞ୍ଜିଲା ନୟନେ ସିନ୍ଦୂର ହେ । ୪୧ ।
କେଉଁ ନାରୀ ସୁବୃତ୍ତ ନିର୍ମଳ ମୋତିମାଳା ।
କ୍ଷୁଦ୍ର ଘଣ୍ଟମାଳ ବୋଲି କଣ୍ଠରେ ଖଞ୍ଜିଲା ହେ । ୪୨ ।
ଅସ୍ତଁ ଆସ୍ତଁ କେଉଁ ବାଳୀ ବୀଣା ପକାଇଲା ।
ସ୍ତନେ କର ପଡନ୍ତେ ପଡିବା ପାସୋରିଲା ହେ । ୪୩ ।
କୁଙ୍କୁମ ଯେନୁଣ ଥିଲା ଚିତ୍ର ଯେଉଁ ବାସ ।
ସେହି ବାସେ ଧାଇଲା ସୁସ୍ତନା କଞ୍ଜଦୃଶ ହେ । ୪୪ ।
କରୁଥିଲା ବଲ୍ଲଭ ଯାହାକୁ ପରିରମ୍ଭ ।
ପରିରମ୍ଭ ଛଡ଼ି ସେ ଧାଇଲା ହାତ ଦମ୍ଭ ହେ । ୪୫ ।

ଉତ୍କଳର ଦେଖିଣ ଜନନୀ ତୁଷ୍ଟଚିତ୍ତ ।
ଦେଖିଲେ ଯେସନ ହିନ୍ଦୁ ସପର୍ବାଣ ଇନ୍ଦୁ ହେ । ୪୬ ।
ସୁଲକ୍ଷଣୀ ନାରୀମାନେ ବନ୍ଦାପନା କଲେ ।
ପୁଷ୍ପ ବଧୂ ଜନନୀ ଚରଣେ ପ୍ରଣମିଲେ ହେ । ୪୭ ।
ଯଥୋଚିତ କଥ କଲେ ଉତ୍ତୁର୍ଥୀ ବଧାନ ।
ନାନା ରସେ ସନ୍ତୁଷ୍ଟି ହୋଇଲା ଯାତ୍ରଦନ ହେ । ୪୮ ।
କେତେଦନ ଅନ୍ତେ ରତ୍ନମାଳା ଜନ୍ମେଣର ।
ଜଣାଇ ମନ୍ତ୍ରୀ ମେଲ୍ଲଣି କଲ ଲୁମରଷ୍କୁ ହେ । ୪୯ ।
ଯେତେ ଦନ ଥିଲେ ପୁଷ୍ପଧନ୍ଵ ରାଜା ଜନ ।
କରୁଥିଲେ ପ୍ରତଦନେ ଏମନ୍ତ ଭୋଜନ ହେ । ୫୦ ।
ଅପୋ.ଦର ଭାଇ ପ୍ରାୟେ ଅଟଇ ବଇଲ୍ଲ ।
ତର୍ଣ୍ଣକର ପ୍ରାୟେ ଉଷ୍ଣ ଗୁଣରେ ପୂଜତ ହେ । ୫୧ ।
ଶିରୀଷ କୁସୁମ ପ୍ରାୟେ ଅତ୍ୟନ୍ତ କୋମଳ ।
ସାଧୁତ ରମଣୀ ପ୍ରାୟେ ସ୍ଵଭାବେ ମଙ୍ଗଳ ହେ । ୫୨
ବ୍ରହ୍ମ ବପ୍ର ପ୍ରାୟେ ଅତ ସୂକ୍ଷ୍ମ ଅତ ଶୁଚ ।
ବହୁତ ଗୁଣରେ ଶୋଭା ସଙ୍କାଶ ବପକ୍ଷ ହେ । ୫୩ ।
ରମ୍ଭା ମୀନକେତନ ସଙ୍କାଶ ସ୍ଵର୍ଗପୁର ।
ପୌଷମାସ ପ୍ରାୟେ ସେହୁ ବହୁ ଗୁଣଧର ହେ । ୫୪ ।
କଳ୍ପତରୁ ପ୍ରାୟେକ ବହୁତ ଫଳଧର ।
ଗୃହୀ ପ୍ରାୟେ ଉତ୍ତର ସ୍ନେହେ ଜରଜର ହେ । ୫୫ ।
ଧାର୍ମିକ ପ୍ରାୟେକ କଣ୍ଠ ଅନ୍ତରେ ପୂରତ ।
ବୈଷ୍ଣବ ପରାୟେ ସର୍ବଠାରେ ସ୍ନେହବନ୍ତ ହେ । ୫୬ ।
ରସିକ ଯୁବତୀ ପ୍ରାୟେ ହୃଦୟ ମଧୁର ।
ପବନ ପରାୟେ ବହୁ ଖଣ୍ଡରେ ରୁଚର ହେ । ୫୭ ।

ଅଦ୍ୟ ଏମ୍ବପଦ ଅର୍ଥ ହୁଅଇ ଅନ୍ନରେ ।
ମଧ୍ୟ ପ୍ରାନ୍ତ ବେନି ବେନି ବ୍ୟଞ୍ଜନ ସୂପରେ ହେ । ୫୮ ।
ଏରୂପେ ଅନ୍ନ ବ୍ୟଞ୍ଜନ ପୂପ ହେମପାତ୍ରେ ।
ଭୁଞ୍ଜୁଆନ୍ତି ବକ୍ତ୍ରରୁ ଶୁଣାଇ ପରସ୍ପରେ ହେ । ୫୯ ।
ଗଜେନ୍ଦ୍ର ଦ୍ରୌପଦୀ ପ୍ରହ୍ଲାଦ ଦୁଃଖହର ।
ଶୁକ୍ରଧ୍ରୁବବିଦାଭା ବକ୍ତ୍ରପାଦହୃଦଧର ହେ । ୬୦ ।
ସୁଦାମାଦାରିଦ୍ର୍ୟହର ଶଙ୍କରବରଦ ।
କୁବୁଜାପ୍ରସନ୍ନ ହୃତ ଗଜାଙ୍କ ବିପଦ ହେ । ୬୧ ।
ପତିତପାବନ ବୃନ୍ଦାବନପତି ପଦ ।
ଚିନ୍ତି ଲୋକନାଥ ଦାସ ଜାଣିଲା ବିପଦ ହେ । ୬୨ ।

——:୦:——

## ପଞ୍ଚଦଶ ଛାନ୍ଦ ।

### ରାଗ ଚନ୍ଦ୍ରା କେଦାର ।

ଏଥୁଁ ଅନ୍ତେ ଶୁଣ ଅନଙ୍ଗରସ । ଗଲା ଏରୂପେ କେତେ ଦିବସ । ନିଜ ନିବାସ ପ୍ରବେଶ ହେବା ପଥେ ପଶିଲା ହଂସ ମାନସ ହେ ସୁନ୍ଦରୀ । ୧ ।

କହେ ଅଳୁଚ ହୋଇ ମରାଳ । ଧାର ନୟନରେ ଅଶ୍ରୁଜଳ । ସଦନ ଗମନ ସଙ୍ଗ କାକ ଦୋଷ ହେଲା ମୋ ସୁକୃତ ଫଳ ଗୋ ସୁନ୍ଦରୀ । ୨ ।

ଦରଶନେ-ତୋ ମୁଖ ମଣ୍ଡଳ । ମୋର ନୟନ ହେଲା ସଫଳ । ଯାହା ଦରଶନେ ମନେ ଅନ୍ତୁପିଲା ବ୍ରହ୍ମଲୋକ ଇସାଇଲ ଗୋ ସୁନ୍ଦରୀ । ୩ ।

ଏହି ନ୍ୟାୟରୁ ସତ ସଙ୍ଗତ । ସାଧୁଜନମାନେ କହନ୍ତି । ବିଯୋଗରେ ଦୁଃଖ ଯୋଗ ଶୋକ ହେତୁ ବିଯୋଗକୁ କର ଛାଡ ଗୋ ସୁନ୍ଦରୀ । ୪ ।

ତାହା ଶୁଣି ସେ ନୃପତିରମା । ହୋଇ ଅତିଶୟ ଦୁଃଖତମା ।
ବୋଇଲା ସନ୍ତାପ ମହାପ ମୋହର ଜାଣିଲୁ ଆନନ୍ଦ ସୀମା ହେ
ମଙ୍ଗଳ । ୫ ।

ଘୋର ବିରହ ସମୀର ବଳେ । ଲୁଚି ଯାଉଅଛନ୍ତି କାମଜଳେ ।
ଯେ ମୋତେ ତରଣୀ ହୋଇ ଲଗାଇଲା ପ୍ରାଣନାଥ କୋଳ କୂଳେ
ହେ ମଙ୍ଗଳ । ୬ ।

ଏବେ ସେ ଯେବେ ପାଣରୁ ଯିବ । ଜୀବ ଉପାଇ ସଙ୍ଗେ ନ ଯିବ ।
ବର୍ତ୍ତିବ ବୋଇଲେ ବର୍ତ୍ତିବ ପାରଇ ବିବିଧ ଭାବ ସଞ୍ଜୀବ ହେ
ମଙ୍ଗଳ । ୭ ।

ତୁମ୍ଭେ ଜଗତପୂଜ୍ୟ ସାରସ । ନୁହ କାହାର ଭାବରେ ବଶ ।
ମୁ ଯେ ତୁମ୍ଭ ବଶ ତୁମ୍ଭ ବିନା ମୋର ଉଡୁନ୍ଥି ଦେଖି ସାହସ ହେ
ମଙ୍ଗଳ । ୮ ।

ଶୁଣି ନରପତିପତ୍ନୀ ବାଣୀ । କହେ ବିହଙ୍ଗମୁକୁଟମଣି ।
ତୁମ୍ଭେ ନର ଆମ୍ଭେ ଦ୍ୱିଜଜାତି ବେଳେ ଅନ୍ତର ତରୁଣୀମଣି ଗୋ
ସୁନ୍ଦରି । ୯ ।

ତୁମ୍ଭ ସମାନ ମହତ ଜନ । ନବବର୍ଷୀ ସ୍ତନ ସମାନ । ବସିବା
ଠାବରେ ଭୋଗ କରୁଥାଅ ବିବିଧ ବିଳାସମାନ ଗୋ ସୁନ୍ଦରି । ୧୦ ।

ତୁମ୍ଭେ ନରେଶ୍ୱର ପ୍ରାଣେଶ୍ୱରୀ । ଆମ୍ଭେ ଅସ୍ଥିର ଗଗନଚାରୀ ।
ଦେଖିଅଛ କାହିଁ ଚଞ୍ଚଳ ଲୋକଙ୍କୁ ଅଛି କେ ଆଦର କରି ଗୋ
ସୁନ୍ଦରି । ୧୧ ।

ତାହା ଶୁଣି ସେ ନୃପଯୋଷିତା । ବୋଲେ ନ କହିଲ ଯଥୋଚିତ ।
ଅତି ଚଞ୍ଚଳ ଯେ ଚଞ୍ଚଳାକ୍ଷୀ ଚିତ୍ତ ସେ କି ନୁହଇ ଲୋକପୂଜିତ ହେ
ମଙ୍ଗଳ । ୧୨ ।

ବୃଦ୍ଧା ଦାରବଧୂ ପ୍ରଭ ରଟ । ଶୁଣ ଭାବକୁ କରି ପ୍ରକଟ । ପରଂ
ଧନମାନ ହରିବା ହେତୁରେ ହେଉଥାଇ ଛଟପଟ ଗୋ ସୁନ୍ଦରି । ୧୩ ।

(ଶ୍ଳେଷ) ତୁମ୍ଭେ ପରବାଦିନୀ ଯୁବତୀ । ଧୃତ ନାନାଚିହ୍ନ ସରସ୍ୱତୀ ।
ଭୂମି ସ୍ତନ କାନ୍ତ ସ୍ୱର ଗୁଣବତୀ ହୁତ କର ସର୍ବଜନ ମତିଗୋ
ସୁନ୍ଦରୀ । ୧୪ ।

ରଙ୍ଗ ରେଙ୍ଗ ପଦେ କୋମଳା । ଗୁଣୀ ନାୟକ ବରଣମାଳା ।
କାନ୍ତ କରନ୍ତୁ ସଂଯୋଗ ଚିରଙ୍ଗେ ବଲ ଜାତି କୁଳ ରାଗ କଳା ଗୋ
ସୁନ୍ଦରୀ । ୧୫ ।

ଏବେ କହୁ ସେ ନୃପଧର୍ମାକୁ । ପୁଣି କହିବି ନରେଶ୍ୱରକୁ ।
କରୁଛ ଗମନ ରଖି ଜନପଦ ତୁମ୍ଭ ପାଦରେ ମତି ସ୍ଥିରକୁ ହେ
ରାଜନ । ୧୬ ।

ପୁତ୍ର ପରାୟେ ପାଳବୁ ପ୍ରଜା । ଗୁରୁଜନେ ରଖିଥିବୁ ଲଜ୍ଜା ପରେ ପଦ୍ମ-
କ୍ରମ ସବୁଠାରେ ଧର୍ମ ଦେବ ବ୍ରାହ୍ମଣରେ ଦେବପୂଜା ହେ ରାଜନ ।୧୭

ନୀଚ ଜନେ ନ କରିବୁ ପ୍ରୀତି । ପରଧନରେ ନ ଦେବୁ ମତି ।
ମହତ ମହତ୍ତ୍ୱ ଖ୍ୟାତି ନ କରିବୁ ନୀତିରେ କରିବୁ ପ୍ରୀତି ହେ ରାଜନ ।

ଯାହା କରିବୁ ଥିବ ସେ ମନେ । ଫଳେ ଜାଣିବେ ସକଳ
ଜନେ । ସମୟେ କହୁ ଜନ ମନ ରଞ୍ଜିବୁ ଯେସନେ ପିକବଚନେ ହେ
ରାଜନ । ୧୯ ।

ମନ୍ତ୍ର କରିବୁ ମନ୍ତ୍ରୀକୁ ଘେନି । ହେବୁ ସବୁଠାରେ ଅବଧାନୀ ।
ମଦ ମୃଗୟା ଦ୍ୟୂତରେ ଆସକତ ନୋହିବୁ ନୃପମଣି ହେ ରାଜନ ।

ନ କହିବୁ ଖଳେ ତତ୍ତ୍ୱ ଗୀର । ଅହିତହିଁ କରିବୁ ଶତ୍ରୁର । ଅସ୍ତ୍ରି
ହୋଇଲେ ଔଷଧ ସେ ଦେଇ ଜ୍ୱରରେ ନ ଦେଇ କ୍ଷୀର ହେ
ରାଜନ । ୨୧ ।

ଶତ୍ରୁ ଲୋକର ମଧୁର ଭାଷ । ତହିଁ ନ କରିବୁ ବିଶ୍ୱାସ ।
ଯେମନ୍ତ ବିଷ ଦେବା ଲୋକ ଅବଶ୍ୟ ଦିଅଇ ଅହ୍ଲାଦ ରସ ହେ
ରାଜନ । ୨୨ ।

ଯଥା କୃଷ୍ଣମଲତା ପ୍ରଣାମ । ଗନ୍ଧା ହେବ ମାଳାକାର ସମ । ସେହିମନ୍ତ ସନ୍ତ ହସ୍ତ କର ଦେଇ ନେବ କର ରତନ କୁସୁମ ହେ ସଜନ । ୨୩ ।

ନିରଳସ ବିବେକ କୁଳୀନ । ବିଦ୍ୟାବନ୍ତ ନୀତିବିଚକ୍ଷଣ । ଅପକ୍ଷପାତୀ ଧାର୍ମ୍ମିକ ଅକୁମାର ସତିବର ଏତେ ଗୁଣ ହେ ସଜନ ।୨୪

କହୁଥିବ ଯେ ଯେମନ୍ତ ଜନ । ତାହାଠାରେ ଦେବେ ଅବଧାନ । କାହାର ଚିନ୍ତା କାହା ହେତୁ ନ ଥିବ କରିଥିବ ମତି ଭାବ ଭିନ୍ନ ହେ ସଜନ । ୨୫ ।

ଦଣ୍ଡ ବହିବ ଦଣ୍ଡ୍ୟ ଲୋକରେ । କ୍ଷମା କରିବହିଁ କେଉଁଠାରେ । ନ ଦେବ ଅଧିକାର ଦ୍ୱିଜ କ୍ଷତ୍ରିୟ ଜ୍ଞାତି ସଙ୍ଗୀ ଉପକାରେ ହେ ସଜନ ।

ରୂଢ଼ କର୍ମ୍ମେ ଦୁଷ୍ଟ ମାନେ ହତ । ଏହି ପ୍ରମାଣ ଅଛି ଦୃଷ୍ଟାନ୍ତ । ଯେମନ୍ତ ବିଷ ଅମୃତରସ ହୁଏ ହୋଇଲେ ସାଧୁଶୋଧିତ ହେ ସଜନ । ୨୭ ।

ଗୁପ୍ତ ସ୍ଥାନରେ ଥିବ ଗୁପତେ । ବ୍ରହ୍ମ ପ୍ରାଏ ତାର ସୂକ୍ଷ୍ମମତେ । ପରମଣି ପୁଷ୍ପସାରକୁ ହରବୁ ଯେହ୍ନ ସମୀରଣ ଯତ୍ନେ ହେ ସଜନ ।୨୮

ବନ୍ଧୁ ସଂଗ୍ରହ ଅଳପ ଖ୍ୟାତ । କରକମଣ୍ଡଳୁ କ୍ଷମ ମନ୍ତ୍ରୀ । ନିତ୍ୟ ନିଯୋଗୀଙ୍କ ଅଢଣପ୍ ସୁସ୍ଥ ନ କରିବୁ ନରପତି ହେ ସଜନ । ୨୯ ।

ତୁମ୍ଭେ ବିବେକବର ସୁଜାଣ । ଜ୍ଞାନୀ ଧାର୍ମ୍ମିକ ନୀତିନିପୁଣ । ମୁଁ ହୀନ ଦ୍ୱିଜ କହିଛି ପରେ ଯାହା କହିଲି ପିଷ୍ଟପେଷଣ ହେ ସଜନ ।୩୦

କହି ଉତ୍ତମ ପରମହଂସ । ତାହା କେଶି ସେ ପ୍ରିୟା ପୁରୁଷ । ଏସନ ହେଲେ କି କହିବା ତାଙ୍କର ଉତ୍ତମ ପ୍ରାଣ ସାରସ ସେ ଦମ୍ପତି । ୩୧ ।

ସେହିଦିନ ଦିନ ଅବସାନେ । ନିଧିବନାନ୍ତ ଶାନ୍ତ ଶଯ୍ୟାରେ । ପ୍ରିୟା ବିନାଶ, କାନ୍ତ ନାହିଁ ପାଶରେ, ଦେଖିଲେ ଦୁହେଁ ସ୍ୱପନେ ହେ ସଜନେ ।

ଏକାବେଳକେ ଦୁଇ ବୟସ । କେହି କହିବାକୁ ନୋହେ ରହି ।
ଏଣୁ କଲ ପଗ ବର୍ତ୍ତିଲ ସୁରଙ୍ଗ ଯଧସ୍ତ ଚନ୍ଦ୍ରାସମ୍ଭୂତ ହେ ସୁଜନେ ।୩୩।

କନ୍ତ ନୋହିଲ ମନେ ତୁମ୍ଭର । ତୁମ୍ଭେ ଦର୍ପାନ୍ଧ ଧନୁର୍ଦ୍ଧର ।
ତୁମ୍ଭେ ଦେଖୁ ଦେଖୁ ପରାଣ ନେଉଛ ଏ ସ୍ଥିର କୁସୁମଶର ହେ
ସୁଜନ । ୩୪ ।

ଦେବ ନୃପତି କୁସୁମଧନୁ । ଏହି ସଂଶୟ ଗଲା ମୋ ମନୁ ।
ତେଣୁ କର ଏଡେ ନିର୍ଦ୍ଦୟ ହୋଇଣ ଦହୁଛ ଅବଳା ତନୁ ହେ
ଅତନୁ । ୩୫ ।

ତୁମ୍ଭେ ଚଞ୍ଚଳମନ ଭ୍ରମର । ପ୍ରିୟସଖା ମଧୁ ଦୋଷାକର । ଏଣୁ କରି
ଜାଣେ ନିର୍ଦ୍ଦୟ ହୋଇବା ତୁମ୍ଭଙ୍କୁ କେତେ ମାତର ହେ ଅତନୁ । ୩୬

ସୂକ୍ଷ୍ମ ଅଞ୍ଜନଗୁଣେ ରଞ୍ଜନ । ପର ନାସ୍ତି ଭ୍ରୂର ଶରାସନ ।
ଯାହା ଧନୁର୍ଗୁଣ ବିଳାସ ରଚନ୍ତେ ବିନାଶ ବିଳାସ ଗୁଣ ହେ
ସୁନ୍ଦର । ୩୭ ।

ପୁଣି ହୃଦକୁ ବୋଲେ ରମ୍ଭୋରୁ । ତୁଟ ବକ୍ଷ୍ୟୁ ହୋଇଲୁ ଗୁରୁ ।
ପ୍ରାଣନାଥ ଗତି ପଥ ଅନୁସରି କିପାଁ ଗମନ ନ କରୁ ରେ ପରାଣ ।୩୮

ଏମନ୍ତ ପଦ ପ୍ରମଦା ବେଦନ । ଏବେ ଶୁଣ ହେ ରସିକଜନ ।
ଯେମନ୍ତ ଭାବେ ନୃପତି ଚୂଡାମଣି କଲେକ ବିଳାପମାନ ହେ ସୁଜନେ।୩୯

ଶ୍ରବଣରେ ଯେ ମଧୁ ଚରିତ । ଶବ୍ଦ ହୋଇବ ଅରନ୍ତୁଦ । ଶୃଙ୍ଗ
ଶୃଙ୍ଗ ତାକୁ ନାଶ କରିବାକୁ ବଳିଲା କେମନ୍ତ ଦଇବ ହେ ଶମନ ।୪୧

ଯେଉଁ ବୟସକୁ ସ୍ଥଳେ ଧରି । ମୂର୍ଖେ ନ ଭାଳନ୍ତି ତରୁ ତରି ।
ଧର୍ମରାଜ ହୋଇ ଏମନ୍ତ ଅଧର୍ମ କଲ ତୁମ୍ଭେ କି ବର୍ତ୍ତୁଳ ହେ
ଶମନ । ୪୨ ।

ତାର ଲାବଣ୍ୟନିଧି ବଦନ । କଲା ଉଷାରୁ ଅବଲୋକନ । ଯାହା
ପାଇଁ ପ୍ରାଣ ଦେବ ତୃଣ କରି ନାଶିଲୁ ତାର ଜୀବନ ହେ ଶମନ ।୪୩

ଅହେ ଆରତିଭଞ୍ଜନ ହରି । ମୁଁ ଯେ କରୁଛି ସ୍ତୁତି ତୁହାର ।

ଏଣ ଅପ୍ରାଧେ ମୋ ପ୍ରାଣପୁରୁଷଙ୍କୁ ନେଲ କର୍ପା । ଯମ ଧର ହେ ଗୋସାଇଁ । ୪୪ ।

ତୁମ୍ଭେ ବୋଲିବ ଏବା ଏମନ୍ତ । ଚୋର ଅଟଇ ଏ ପୂର୍ବାର୍ଜିତ । ଏକଥା ଅନ୍ୟଥା କରିବା କଥାହିଁ ଅଟଇ ତୁମ୍ଭ ଅପୂର୍ବ ହେ ମୁରାରି । ୪୫ ।

ତୁମ୍ଭେ ଯେବେ ଏହା ନ ଶୁଣିବ । ଏବେ ଦୁଃଖୀ କାହାକୁ କହିବ । ଏତେ କାଳେ ମୋର ବେଳକୁ ଦୟାଳୁ ନୋହିଲ ଦୀନବାନ୍ଧବ ହେ ମୁରାରି । ୪୬ ।

ନାଶ କର ପାର ଦବ୍ୟଳ୍ପି । ମୁ ଯେ କହୁଛି ଏଣୁ ଅଦ୍ୟାପି । ଶୁଣିଅଛି ଗୁରୁପୁର୍ବଙ୍କୁ ଦୟାଳୁ ଯାହା କଲ ବଣବ୍ୟାପୀ ହେ ମୁରାରି । ୪୭ ।

ଚାରୁ ସୁନ୍ଦର ମୁଖକୁ ଚାହିଁ । ଯେତେ ଯେତେ ସୁଖ ଥାଇ ପାଇ । ଏବେ ଯେ ସେ ସୁଖ ଅନଳେ ହଜାଇ ଯେତେଲେ ପାଇବୁ କାହିଁ ରେ ନୟନ । ୪୮ ।

ପୂର୍ଣ୍ଣ ପୀୟୂଷରସ ବିମ୍ବୋଷ୍ଠୀ । ଯେନ ଗଲା ମୋର ସୁଖଦୃଷ୍ଟି । ଏବେ ନିର୍ଲିପ୍ତ କାହାକୁ ଚାହିଁବାକୁ ରହିଛ ନ ଯାଇ ଫୁଟିରେ ନୟନ । ୪୯ ।

ଦିନେ ନିରାଶ ପ୍ରସଙ୍ଗେ କରି । କହି ନାହୁଁ ଯେ ନବକିଶୋରି । ଗଲାବେଳେ ଗଣ୍ଡା କାଟି ପକାଇଲୁ ବକୁଳର ଗଛ ଧରି ତରେ ସୁନ୍ଦରି ।

ଦିନେ ସ୍ୱପ୍ନେ କରି ନାହୁଁ ମାନ । ଭୁଜବଳି ଯୁବତୀରତନ । ଜାଣିଲି ଯିବ ଜୀବନ ବନ୍ଧୁ ଚୋର ହୋଇଲା ବେଳୁ ମଉନ ରେ ସୁନ୍ଦରି । ବୋଲୁଁ ବୋଲୁଁ ସେ ପକ୍ୱବିମ୍ବୋଷ୍ଠୀ ଯାବେ ହୃଦୟ ପାଷାଣ ଫୁଟି । ହାଗିବ ସଙ୍ଗେ ବାହାର ହୁଏ ପ୍ରାଣ ନୃପ ଭୂ ବଳର୍ଥେ କର୍ଣ୍ଣି ରେ ପତନ । ୫୨ ।

ତାର ସଙ୍ଗେ ଗଲା ସୁଖସୃଷ୍ଟି । ଜୁଟିକହିଁ ହେଲା ଯୁଗ କୋଟି । ଫୁଟି ଯାଉଛ କେଉଁ ଫାଟି ଯାଉଛ ଗାଏ ପରମ ପୀୟୂଷ ଭୁଞ୍ଜି ରେ ସଜୀବ । ୩୮ ।

ଯାହା ହେଲେ ଦଶରଥ ରାଜା । ତାହା ସୁମର ନ ପାଉ ଲଜ୍ଜା । ଅବଶ୍ୟ ମଉ ଜନମ ହୋଇଥିଲେ ଏହା କ ସ୍ମର ସନ୍ଧରେ ଯାଯା ରେ ପରାଣ । ୩୯ ।

ଯେବେ ଏମନ୍ତ ଭାବରେ ଯିବୁ । ଗଲେ ଥିବା ପ୍ରାୟେ ହୋଇଥିବୁ । ନୋହିଲେ ଥାଇ ନ ଥିବା ହୋଇ ଥିବୁ ଯେତେକ ଦିନ ରହିବୁ ରେ ପରାଣ । ୪୦ ।

ଛାଡ଼ ଦେବେଡେବତ ଅନୁଗ୍ରହ । କଲୁ କି କର ଏତେ ନିଗ୍ରହ । ଏତେ ନିରାଶକୁ କର ନାହିଁ ଦ୍ରୋହ ନୁହଇ ଏ ଦଣ୍ଡସହ ରେ ସୁନ୍ଦର । ୫୪ ।

ନାଗ୍ରୁସ୍ତ୍ରବ ଭଜ ମନ ହିକ । ଛାଡ଼ ଏତାଦୃଶ ଅବିବେକ । କାହିଁ ପାଇବୁ ବିବିଧ ପରିରମ୍ଭ ଅଶ୍ଳେଷ ଚୁମ୍ବାଦି ସୁଖ ରେ ଶରୀର । ୫୫ ॥

ଭଲେ ଭାବ ଭାବବତୀ ଭାବ । ପାଶ୍ୱ ପାଶ୍ୱଭାଗ ହୋଇଯିବ । ଯେବେ ଖୋଜିବୁ ରାଜୀବବଦନାର ଦେଖିବୁ ପଦପଲ୍ଲବ ରେ ପରାଣ । ୫୬ ।

ତାର ଅଧର ରସ ମଧୁର । ଏବେ ଜାଣ ତୁ ସୁଧାରୁ ସାର ତେଣୁ କର ତାକୁ ଜାଣିଣ ଦଇବ ନ ରଖିଲା ମର୍ତ୍ତ୍ୟପୁର ରେ ରସନା । ୫୭ ।

ଏଣୁ କର ସେ ରସକୁ ଲୋଭ । ହୁଅ ସର୍ବରସ ପାକେ ଦ୍ରବ । ନୋ-ହିଲେ ନିରର୍ଥକ ଜିହ୍ୱା ହୋଇବୁ ନିରର୍ଥି ତକ୍ତପ୍ରାଭଶ ରେ ରସନା ।

ଅରେ କୁଟିଳ ମନ ଶ୍ରବଣ । ତୋର ଜାଣିଲି ଦୁରନ୍ତପଣ । ଧୀର ହୋଇଲେ ବଧିର ହୁଅନ୍ତୁନ ନ ଶୁଣି ମଧୁବଚନ ରେ ଶ୍ରବଣ । ୫୯

ତାର ସୁସ୍ୱର ବଚନ ଶୁଣି । ନିନ୍ଦୁ ବୀଣାଧ୍ୱନି ପିକବାଣୀ । ନର୍ଜୀବ ହୋଇ ମରଣକୁ ମହତ ମଣନ୍ତୁ ଅଜ୍ଞାନୀ ଦ୍ୱାରୀ ରେ ଶ୍ରବଣ । ୬୦ ।

ଅହେ ଘଟୁଅ ନିନ୍ଦ୍ୟ ଜନ୍ମେ । ସମ୍ପତ ଭୁମ୍ବର କଷ୍ଟେ । ତୁମ୍ଭ
ତ୍ରିଭୁ ମନ ଅଗେ ନିବେଦନ କର କବୁ ସେ ଅନ୍ତ ହୃଯାମେ ହେ
ନନ୍ଦମ୍ । ୭୧ ।

ହା କାହିଁରେ ମୁଁ ଲକ୍ଷ୍ମୀପତି । ତୁମ୍ଭେ ଦେଇଛ ମନେ ଏ ଗତି
ଗୋ କହିବ ଏଜ ଲୋକେ ଦେଖିଲେ ଦଇବ ଏମ୍ପନ ଯାନ୍ତ୍ରି ହେ
। ୭୨ ।

ଟେହୁଁ ଯେବେ ବଜ ନହ୍ଯା । ଅଭ ଥାଅନ୍ତା କରେ ମାଧବ ।
ସମାଜଙ୍କ ଦଣ୍ଡ ଦେଉଥିଲେ କାହିଁକି କମଳାସର୍ଣ୍ଣ ହେ
ମୁରହର । ୭୩ ।

ମୁଁ ଯେ ଅଚଳ ଲିଭର ଜୀବ । ମୋତେ ଏତେ ଘୋର ପରାଭବ ।
କେଉଁ ଅପରାଧେ ଦାରୁଣ ପଣରେ ଦେଉଛ କଲୋଧର ହେ
ଶ୍ରୀହର । ୭୪ ।

ଭୋଗ ସୁତରେ ବୋଲ୍ଲି ନିର୍ଗଣ । କେଉ ବେଳରୁ ଏହା ଜାଣିଣ ।
ଗୁଣୀ ପଗଣିରେ ଏକ କାର ଯାବ ଏନକ୍ତ ଉତ୍ତମ ଗୁଣ ହେ ମୁରାରି ।

ଚାରି ପକ୍ଷଳ ଦେଖି ମାଧବ । ସେହି ସ୍ୱପ୍ନେ ହୋଇ ଦୁଃଖଭାବ ।
ବୋଲନ୍ତି ତନ୍ତ୍ରା ଛତ୍ରରୁ ଦୂର କର ଜଗନ୍ନାଥଙ୍କ ହେ ଗଞ୍ଜନ ॥

ବୋଲୁ ଯାହା ତୁ କ୍ଷଣ ପୁରୁଷ । ତାହା ନ ପାଏ ଲୋକେ କରେଶ ।
ଏଣୁ ସେ ପ୍ରାଣପୁରୁଷଙ୍କୁ ଦେଖିଲେ ହେବ ଟୋ ଖଣ୍ଡ ନାଶ ହେ
ଗଞ୍ଜନ । ୭୭ ।

ଏବେ ଯାଉ ତୁ ଘୋର ଶୋଚନା । ଯାଉ ମନ ବଣ୍ଡ ବାସନା ।
ପ୍ରେମ୍ଭାବନ୍ତ ଜୀବ ନିଶ୍ଚଳ ହୋଇବ ହେଲେ ସେ ଯେଉଁ କାମନା ହେ
ଗଞ୍ଜନ । ୭୮ ।

ଯେଉଁ ଜଗନ୍ନାଥ ପଦ ଧ୍ୟାନେ । ଦେଖି ନାହାନ୍ତି ଯୋଗୀନ୍ଦ୍ରମାନେ
ଯେଉଁ ବାଣପୁର ନୃପ ପରସାଦେ ଦେଖିଲେ ସକଳ ଜନେ ହେ
ସୁଜନେ । ୭୯ ।

ଯେବେଁ ସୁରାଜ୍ୟ ରକ୍ଷ ବନଜାବେ । ଚନ୍ଦ୍ରହାସକୁ ଧରନ୍ତି ଯେବେ ।
କ୍ଷତ୍ରିୟମାନଙ୍କର ଯେ ଚନ୍ଦ୍ରହାସ ବଳାସ ଦେଖନ୍ତି ତେବେ ହେ ସୁଜନେ ॥

ନାମ ଜଗନ୍ନାଥ କାନ୍ତିମୂର୍ତ୍ତି । କୀର୍ତ୍ତିଚନ୍ଦ୍ରେ ଧବଳତ କ୍ଷିତି । ଯେ
ହୃଷ୍ଟଚନ୍ଦନ ଶ୍ୟାମନ୍ତି ଗୋପୀଜନବଲ୍ଲଭ ସେବାରେ ମତ ହେ ସୁ

ଏଣୁ ଏ ନୃପ ଧର୍ମପାଳନା । କୋହିଲ ଶ୍ରେଷ୍ଠ ଗୁଣେ ଯୋ
ଏ ଗୁଣ ଗଣନା କରି କେ ପାରିବ ସମୁଦ୍ର ରେଣୁ ଭଳି
ସୁଜନେ । ୭୨ ।

କୋଟି ବ୍ରାହ୍ମଣ ହସ୍ତେ ଜୀବନ । ଯାହା ଦଯନ୍ତି ନ
ସେ କଥା ତାହାଙ୍କ ଅଧିକ ନୁହଇ ଯେଣୁ ସେ ଅରକ୍ଷାଧୀନ ହେ
ସୁଜନେ । ୭୩ ।

ଧର୍ମ ଏକେତ ପ୍ରସ୍ପଣ ବୃଷ । ତହିଁ ହୋଇଥିଲ ପାଦ ନାଶ ;
ତାକୁ ରକ୍ଷା କଲ କଥା ଏ ନୃପଙ୍କୁ ଏଣୁ ନୁହଇତ ପଉରୁଷ ହେ
ସୁଜନେ । ୭୪ ।

ସେହି ମୂର୍ତ୍ତି ଗଢ ମଣୋ ନାଶ । ଭବଗଣ ହୃତ ଉପଦେଶ । ଧର୍ମ
ମାର୍ଗରେ ଚଳତେ ଅବା ବସାପ ସେହି ତାପସ ଭୂଷଣ ହେ ସୁଜନେ ॥

ମୋର ସ୍ୱଜାଣ ମାଉଜା ମନ । କଥ ସବୁରୁ ତହିଁ କେତନ ।
ପ୍ରିୟା ପଞ୍ଜରୀରେ ଥାଇ ଚଳୁଥିଲ ଯେଉଁ ରାମଗଣ ମନ ହେ
ସୁଜନେ । ୭୬ ।

ଅହେ ଅରକ୍ଷ ଶରଣମେରୁ । ହୃତ ଗଜ ଉଦ୍ଧରଣ ସୀରୁ ।
ଅବଶ ଲେଖନାଥଙ୍କୁ ରକ୍ଷା କର ଦୁସ୍ତର ଭବସଂସାରୁ ହେ ମୁରାରି ।୭୭।

ସମ୍ପୂର୍ଣ୍ଣ ।

# ବିଜ୍ଞାପନ ।

---

ନିମ୍ନଲିଖିତ ପୁସ୍ତକମାନ କଟକ ପ୍ରିଣ୍ଟିଂକୋମ୍ପାନିଙ୍କ ପୁସ୍ତକ ଦୋକା-ନରେ, ଶ୍ରୀଯୁକ୍ତ ବାବୁ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କ ଦୋକାନରେ ଓ ଉତ୍କୋଷଘ ପ୍ରେସରେ ଏବ ଘମ୍ନକଠରେ ପ୍ରାପ୍ତବ୍ୟ ।

| | |
|---|---|
| ସର୍ବାଙ୍ଗସୁନ୍ଦରୀ | ଟ ୦ ।୵ |
| ମହାଜନହାଟ | ଟ ୦ ‹ ୯ |

ପ୍ରକାଶ ଥାଉ କି ମୋଫସଲର ଗ୍ରାହକମାନଙ୍କୁ ଡାକମାସୁଲ ଦେ-ବାକୁ ପଡ଼ିବ ।

୬।୭।୯୧
ତେଲେଙ୍ଗାବଜାର
କଟକ

ଶ୍ରୀ ଗୌରୀଶଙ୍କର ପଟ୍ଟନାୟକ ।